# ଦୁବ ଅକ୍ଷତ

(ଭକ୍ତି ସଂକଳନ)

କବି :

**ସୁଭଦ୍ରା କମିଲା**

ମାର୍ଫତ:ବଟକୃଷ୍ଣ କମିଲା
ଏଫ ଡି - ୨୦, ଏଚ.ଏ.ଏଲ୍,
ସିନିୟର ଅଫିସର୍ସ ଏନ୍‌କ୍ଳେଭ୍,
ଓଲ୍ଡ ମାଡ୍ରାସ୍ ରୋଡ୍, ନିଏର ବିଗ୍ ବଜାର
ବାଙ୍ଗାଲୋର - ୯୩, କର୍ଣ୍ଣାଟକ
ମୋ-୦୯୭୩୧୦୧୧୦୪୫

ପ୍ରକାଶକ :

**ସମ୍ବିତ୍ ପଟ୍ଟନାୟକ**

ସମନ୍ୱୟ, ବାଲୁଗାଁ,
ଖୋର୍ଦ୍ଧା-୭୫୨୦୩୦

ମୁଦ୍ରଣ :

**ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍**

କଲ୍ୟାଣୀନଗର, କଟକ-୧୩

ପ୍ରଚ୍ଛଦ :

**ଶ୍ରୀ ବିଜୟ ପ୍ରଧାନ**

ପ୍ରଥମ ସଂସ୍କରଣ :

**୨୦୦୯**

ମୂଲ୍ୟ : ଟ. ୧୦୦/-

# DUBA AKHYATA

(A Collection of devotional songs)

Poet :

**Subhadra Kamila**

C/O - Bata krushna kamilla.
FD-20, HAL,
Senior Officer's Enclave
Old Madras Road,
Near Big Bazaar
Bangalore.- 93, Karnataka
Mob: 09731011045

Publisher :

**Sambit Pattnaik**

**Samanwaya,**

Balugaon, Khurda-752030

Printed at

**Techno Arts Offset**

Kalyani Nagar, Cuttack-13

Cover :

**Shri Bijay Pradhan**

First Edition :

**2009**

Price : Rs. 100/-

# କଳ୍ପତରୁ

ଏଇ ବିଶାଳ ବୈଚିତ୍ର୍ୟମୟ ସଂସାରସ୍ରଷ୍ଟା ସେଇ ଈଶ୍ୱର ହିଁ ଅଟନ୍ତି । ସେ ସତ୍ୟ ଶିବ ସୁନ୍ଦର, ପ୍ରଣବ ଓଁକାର, ସଦ୍‌ଚିଦ୍ ଆନନ୍ଦ, ସେହିଁ ସର୍ବଶ୍ରେଷ୍ଠ କଳାକାର, ସୁରକାର ଚିତ୍ରକାର । ଆନନ୍ଦ ସୁଖମୟ ଐଶ୍ୱର୍ଯ୍ୟର ନିଧାନ, ଇନ୍ଦ୍ରିୟମାନଙ୍କର ଅଧୀଶ୍ୱର ହୃଷୀକେଶ । ସର୍ବଶକ୍ତିମାନ ସେଇ ଅଚିନ୍ତ୍ୟ ସ୍ୱରୂପ ସୃଷ୍ଟି, ସ୍ଥିତି, ବିଲୟର କାରଣ । ସେ ହର୍ତ୍ତା, କର୍ତ୍ତା ବିଧାତା । ସେ ପୂର୍ଣ୍ଣବ୍ରହ୍ମ ପୂର୍ଣ୍ଣମୟ । ସ୍ଥିତପ୍ରଜ୍ଞ ମାନସର ଦିବ୍ୟ ଚେତନା । ଚୈତନ୍ୟମୟ ଆଲୋକ । ଗୀତାରେ ଉଲ୍ଲେଖ ଅଛି, ଏହି ସଂସାର ଏକ ବୃକ୍ଷ ସଦୃଶ । ଏହି ସଂସାର ରୂପୀ ବୃକ୍ଷର ଉତ୍ପତ୍ତି ଏବଂ ବିସ୍ତାର ଆଦିପୁରୁଷ ନାରାୟଣଙ୍କଠାରୁ ହୋଇଛି । ସେହି ଆଦିପୁରୁଷ ପରମେଶ୍ୱର ହେଉଛନ୍ତି ନିତ୍ୟ ଅନନ୍ତ ଓ ସକଳ ଶକ୍ତିର ଆଧାର । ନିତ୍ୟଧାମ ନିବାସୀ ପରମପ୍ରଭୁ ସ୍ଥୂଳ ଅବା ସୂକ୍ଷ୍ମ ରୂପରେ ସର୍ବତ୍ର ବିଦ୍ୟମାନ । ସେଥିପାଇଁ ସେ 'ଉର୍ଦ୍ଧ୍ୱ' ନାମରେ ନାମିତ ଏବଂ ତାଙ୍କଠୁ ଉତ୍ପନ୍ନ ଏଇ ସଂସାର ବୃକ୍ଷ ଉର୍ଦ୍ଧ୍ୱମୂଳ ବିଶିଷ୍ଟ ଅଟେ । ତାଙ୍କରି ମାୟାରୁ ଉତ୍ପନ୍ନ ଏଇ ସଂସାର ବୃକ୍ଷ ପରିବର୍ତ୍ତନଶୀଳ, ଅନିତ୍ୟ, ବିନାଶଶୀଳ କ୍ଷଣଭଙ୍ଗୁର । ଏଣୁ ଏହାର ମାୟାରେ ବଶୀଭୂତ ନ ହୋଇ ମାୟାପତି ପ୍ରଭୁଙ୍କର ଶରଣାଗତ ହେବା ସହିତ ନିତ୍ୟ ନିରନ୍ତର ତାଙ୍କୁ ସ୍ମରଣ କରିବା ଉଚିତ, କାରଣ ତାଙ୍କ ସୃଷ୍ଟିରେ ସବୁଠାରୁ ସୁନ୍ଦରତମ ସୃଷ୍ଟି ହେଲା ମନୁଷ୍ୟ ଜନ୍ମ । ଚଉରାଅଶି ଲକ୍ଷ ଯୋନି ଅତିକ୍ରମ

କରିସାରିବା ପରେ ଅନେକ ପୁଣ୍ୟ ଓ ଆଶୀର୍ବାଦ ସ୍ୱରୂପ ମନୁଷ୍ୟ ଜନ୍ମ ପ୍ରାପ୍ତ ହୋଇଥାଏ । ମାତୃଗର୍ଭରେ ପିଣ୍ଡର ଅବସ୍ଥାନଠାରୁ ଆରମ୍ଭକରି ପୃଥିବୀରେ ଜନ୍ମଗ୍ରହଣ ପର୍ଯ୍ୟନ୍ତ ସେ ସମସ୍ତ ସୁବିଧା ଖଞ୍ଜି ଦେଇଥାନ୍ତି । ଜୀବନର ପରବର୍ତ୍ତୀ ଅବସ୍ଥାରେ ପୂରଣ କରିଥାନ୍ତି ପ୍ରତିଟି ଆବଶ୍ୟକତା । ଶରୀର, ଇନ୍ଦ୍ରିୟ ଓ ମନସହିତ ଯୁକ୍ତ ହୋଇ ଆତ୍ମା ମଧ୍ୟରେ ସେ ସ୍ୱୟଂ ପରମାତ୍ମା ରୂପେ ଅବସ୍ଥାନ କରିଥାନ୍ତି ।

ଆତ୍ମାର ଉର୍ଦ୍ଧ୍ୱଗତି ନିମନ୍ତେ ଅନେକ ସାଧନାର ମାର୍ଗ ଦେଖାଇଥାନ୍ତି । ମୂଢ଼ମନ ଇନ୍ଦ୍ରିୟାଧୀନ ହୋଇ ଚିହ୍ନିପାରେ ନାହିଁ ସେଇ ମାର୍ଗ । 'ମୁଁ 'କାର ଭିତରେ ଆତ୍ମା ଓ ପରମାତ୍ମାର ଯଥାର୍ଥ ସ୍ୱରୂପ, ଗୂଢ଼ ସଂବନ୍ଧ ଏବଂ ପରମତତ୍ତ୍ୱକୁ ବୁଝିପାରେନାହିଁ । ଅହଂଶୂନ୍ୟ ହୋଇ ସଂପୂର୍ଣ୍ଣ ସମର୍ପଣ କରି କାମନା ରହିତ ଧ୍ୟାନଧାରଣାରେ ଆତ୍ମମଗ୍ନ ହୋଇପାରେନାହିଁ । ଭାବକୁ ନିକଟ ଅଭାବକୁ ଦୂର ସେଇ ପରମଦୟାଳୁ ପରମପୁରୁଷ ଭାବର ଅଧୀନ । ସେ ଭାବମୟ ଭାବଗ୍ରାହୀ । ସେ ଭକ୍ତବତ୍ସଳ । ସକଳ କର୍ମ ତାଙ୍କଠି ସମର୍ପଣ କରି ଏକାଗ୍ର ଚିତ୍ତରେ ତାଙ୍କ ଉପାସନା ପ୍ରତ୍ୟେକ ପ୍ରାଣୀର କାମ୍ୟ । ସୁଖ-ଦୁଃଖ, ପ୍ରାପ୍ତି-ଅପ୍ରାପ୍ତି, ସିଦ୍ଧି-ଅସିଦ୍ଧି ପ୍ରତ୍ୟେକ କ୍ଷେତ୍ରରେ ସମଭାବାପନ୍ନ ହୋଇ ନିଷ୍କାମ ଭକ୍ତି ଦ୍ୱାରା ତାଙ୍କରି କରୁଣା ପାଇବା ନିମନ୍ତେ ନିଜକୁ ସତ୍‌ପଥରେ ନିୟୋଜିତ କରିବା ଉଚିତ । କାରଣ ସେହିଁ ଗତି, ମୁକ୍ତି, ଶକ୍ତି ପିଣ୍ଡ ମଧ୍ୟେ ସ୍ଥିତ ଆତ୍ମାର ।

୧୯୯୭ ମସିହାରେ ସମ୍ବଲପୁରଠାରେ ଓଡିଶା ସାହିତ୍ୟ ଏକାଡେମୀ ଏବଂ ଆକାଶବାଣୀର ମିଳିତ ସହଯୋଗରେ ଆୟୋଜିତ ଏକ ସାରସ୍ୱତ ସମାବେଶରେ ଯୋଗ ଦେବାର ସୁଯୋଗ ପାଇଥିଲି । ସେଠାରେ ପ୍ରଖ୍ୟାତଯଶା ଗୀତିକାର ରସରାଜ ନାରାୟଣ ପ୍ରସାଦ ସିଂହ, ଗୁରୁକୃଷ୍ଣ ଗୋସ୍ୱାମୀ, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ବିନୋଦିନୀ ଦେବୀ, ସ୍ନେହଲତା ମହାନ୍ତି, ତପନ ପଟ୍ଟନାୟକ, ଡଃ ଶିବ କୁମାର ରଥ, ଗୌରହରି ଦଳାଇ, ବୃନ୍ଦାବନ ଜେନା, ମୀନାକ୍ଷୀ ଦେବୀ, ଗୀତା ଖୁଣ୍ଟିଆ, ମନୋରମା ମହାପାତ୍ର, ସୁବାସ କର, ପ୍ରଫୁଲ୍ଲ କର, ସୁଦର୍ଶନ ଦାସ ତଥା ଆହୁରି ଅନେକ ନୂତନ ଓ ପ୍ରବୀଣ ସ୍ରଷ୍ଟାମାନଙ୍କ ସହ ପରିଚୟ ହେବାର ସୌଭାଗ୍ୟ ମିଳିଥିଲା । ଯାହାକ ପରବର୍ତ୍ତୀ ଅବସ୍ଥାରେ ମୋର

ଚିନ୍ତାଚେତନାରେ ଗଭୀର ଭାବେ ରେଖାପାତ କରିବାସହ, ଭାବଧାରାକୁ ପରିପୁଷ୍ଟ କରିବାରେ ଯଥେଷ୍ଟ ସହାୟକ ହୋଇପାରିଥିଲା । ଏଥିପାଇଁ ମୁଖ୍ୟତଃ ବିଶିଷ୍ଟ ଗୀତିକବି ଶ୍ରୀ ଗୌର ପଟ୍ଟନାୟକଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ମୋର ପୂର୍ବ ପ୍ରକାଶିତ ଆଧୁନିକ ଗୀତିକବିତା ସଂକଳନ 'ମୁଁ ଯେ ତୁମ ମଧୁମୟୀ' ଯଥେଷ୍ଟ ଆଦର ଶ୍ରଦ୍ଧା ଲାଭ କରିଥିବାରୁ ଆଜି ଏହି ଭକ୍ତିସଂକଳନର ପ୍ରକାଶନ ଅବସରରେ ଆକାଶବାଣୀ, ଦୂରଦର୍ଶନ ତଥା ସମସ୍ତ କଣ୍ଠଶିଳ୍ପୀ ଓ ସଂଗୀତକାରମାନଙ୍କୁ ମୋର ଆନ୍ତରିକ ସାଧୁବାଦ ଜଣାଉଛି ।

ନିଜର ସ୍ନେହର ଅନୁଶାସନ ଭିତରେ, ଭକ୍ତିସଂକଳନଟିର ପ୍ରକାଶନର ସମସ୍ତ ଦାୟିତ୍ୱ ଭ୍ରାତୃପ୍ରତିମ ସୁଲେଖକ, କବି ଶ୍ରୀଯୁକ୍ତ ତପନ ପଟ୍ଟନାୟକ ନିଜେ ନେଇଥିବାରୁ ମୁଁ ମୋର ହୃଦୟର ଗଭୀରତମ ପ୍ରଦେଶରୁ ଅନେକ ଅନେକ ପ୍ରାଣମୟ ଶୁଭେଚ୍ଛା ଓ କୃତଜ୍ଞତା ଜଣାଉଛି । ବହିଟିର ପ୍ରକାଶନ ପଛରେ ଯେଉଁମାନଙ୍କର ଅକୁଣ୍ଠ ସ୍ନେହ ଓ ସହଯୋଗ ମୋତେ ପ୍ରେରଣା ଯୋଗାଇଛି, ସେଇ ସମସ୍ତ ବନ୍ଧୁ ପରିଜନ, ଆତ୍ମୀୟସ୍ୱଜନ ଏବଂ ମୋର ପରିବାର, ମୋର ଆଦରର ତିନିଝିଅ ମାମା, ନୀନା, ଇତୁଙ୍କ ପାଖରେ ମୁଁ ଜନ୍ମଜନ୍ମାନ୍ତର ପାଇଁ ଋଣୀ ।

ଇଚ୍ଛାମୟଙ୍କ ଇଚ୍ଛା ବିନା ଏ ଜଗତରେ କୌଣସି କାର୍ଯ୍ୟ ସମ୍ଭବପର ନୁହେଁ। ତେଣୁ ତାଙ୍କରି ଇଚ୍ଛାରେ ସୃଷ୍ଟି ଏ ଭକ୍ତିସୁମନ ତାଙ୍କ ଚରଣାରବିନ୍ଦରେ ସମର୍ପଣ କରି କୋଟିକୋଟି ପ୍ରଣାମ ଜଣାଇବା ସହିତ, ପରମପଦ ଆଶ୍ରିତା ଏହି ବିନୀତ ସ୍ରଷ୍ଟା ସକଳ ହୃଦୟର ସ୍ନେହ, ଶ୍ରଦ୍ଧା ଓ ସହଯୋଗ ପାଇବାର ବିନମ୍ର ନିବେଦନ କରିବା ସହିତ ପରମେଶ୍ୱରଙ୍କ ନିକଟରେ ଆକୁଳପ୍ରାର୍ଥନା ।

ସର୍ବେ ଭବନ୍ତୁ ସୁଖୀନଃ ସର୍ବେସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖ ଭାଗ ଭବେତ୍ ।

- **ସୁଭଦ୍ରା କମିଲା**

-ଯିଏ ମୋତେ ପ୍ରଥମ ମାତୃତ୍ୱର ଗୌରବ ଦେଇଛି,
ଯାହାର ଦରୋଟି କଥାରେ, ନିଷ୍ପାପ ହସରେ ଜୀବନର
ଅନେକ ଦୁଃଖ ଭୁଲିପାରିଛି ସେଇ ଆଦରର ବଡଝିଅ
ମାମା, ଯାହାକୁ ମୁଁ ଅତି ସ୍ନେହରେ 'ନିମୁ' ବୋଲି ଡାକେ,
ତାହାରି ହାତରେ ଏଇ ସ୍ନେହର ଉପହାର -



## ୧

ଜୀବ ଯିବାବେଳେ ଆସିବ ଠାକୁରେ
ନଆସିଲ ଏବେ ନାହିଁ
ମୋ' ମଥାରେ ଦେବ ଲଗାଇ ତୁମର
ପାଦଧୂଳି ଟିକେ ନେଇ ।୦।

ଛଅଖଣ୍ଡ କାଠେ ବନ୍ଧାହୋଇଯିବି
ଶମଶାନପୁରେ ଯେବେ
ଛଡ଼ାଫୁଲ ଗଣ୍ଡେ କାଢି ଫିଙ୍ଗିଦେବ
ମଲାଦେହଟାରେ ସେବେ
ଖଇ କଉଡ଼ିରୁ ମୁଠେ ନେଇ ହାତେ
ବିଞ୍ଚିଦେବ ଭାବଗ୍ରାହୀ ।୧।

ସଜଡ଼ାଜୁଇର କାଠକୁ ଟିକିଏ
ଛୁଇଁଦେବ ନିଜ ହାତେ
ଚନ୍ଦନଚିତା ସେ ହେବ ମୋର ପାଇଁ
ମୁକତିପାଇବି ସତେ
ଚିରଦିନ ପାଇଁ ପରମ ସୁଖରେ
ଶୋଇଯିବି ମୁଁ ଯେ ତହିଁ ॥୨॥

■ ■ ■



## ୨

ଦେଖ ଜଗା ଅଛି କୂଳେ ନାଆକୁ ନେଇ
ପାରି କରିଦେବ ବୋଲି ଏ ଭବ ନଈ ।୦।

ଆସୁଅଛି ଝଡ଼ ଦିଶେ ଚଉଦିଗ ଅନ୍ଧାର
ପ୍ରଳୟର ଲହରୀରେ ଭବନଈ ଅଧୀର
ଡର କିଆଁ ଆସଯିବା ଆସରେ ଭାଇ ।୧।

ସୁଅ କାଟି ଜଗାନେବ ଆମକୁ ଯେ ଧୀରେରେ
କାଳର କରାଳ ଢେଉ ନପାରିବ ଛୁଇଁରେ
ପହଞ୍ଚାଇ ଦେବ କୂଳେ ଭୟ ତ ନାହିଁ ।୨।

ଦୟାକରୁଣାରେ କେତେ ଭରା ତାର ଅନ୍ତର
ବନ୍ଧୁ ସିଏ ଚିରକାଳ ଦୀନଜନ ଦୁଃଖୀର
ଭୁଲିଯିବା ଦୁଃଖ ଯେତେ ତା' ନାମ ଗାଇ ॥୩॥





## ୩

ମନର ମନ୍ଦିରେ ଲୋତକ ଦୀପାଳୀ
ଜଳୁଅଛି ପ୍ରତିଦିନ
ପୂର୍ଣ୍ଣକର ପ୍ରଭୁ ମନବାଞ୍ଛା ମୋର
ଦିଅବାରେ ଦରଶନ ।୦।

ଦେବଙ୍କ ଦୁର୍ଲଭ ଅଚିନ୍ତ୍ୟ ସ୍ୱରୂପ
ତୁମେ ମୋର ଇଷ୍ଟଦେବ
ତୁମ ଶୁଭନାମ ଭଜୁଅଛି ନିତି
ଭୁଲି ସୁଖ ବଇଭବ
ଅପାର ଆନନ୍ଦ ପାଉଅଛି ସଦା
କରି ତବ ଜୟଗାନ ।୧।

ଚାହିଁନାହିଁ କେବେ ଏ ଜୀବନେ କିଛି
ଅନିତ୍ୟ ଏ ଧରାଧାମ
ଚାହିଁଚି ଏତିକି ଭକତପଣରେ
ଭାଜନ ମୁଁ ହେବି ତୁମ
ରହୁ ତବ ମାନ ହେ ମାନଭଞ୍ଜନ
ଘେନ ମୋର ନିବେଦନ ।।୨।।





କାନ୍ଦୁଅଛି ଦେଖ ଆହେ ମହାବାହୁ
ବିଜୟ ନେତ ତୁମରି
ମୋ' ଦୁଃଖରେ ଦୁଃଖୀ ହୋଇଅଛି ଯେଣୁ
ନ ଶୁଣିଲ ମୋ' ଗୁହାରି ।୦।

ଦୁଃଖହାରୀ ବୋଲି ତୁମ ପାଶେ ଦୁଃଖ
ମନଖୋଲି କହିଥିଲି
ଅନିତ୍ୟ ସଂସାରେ ନିତ୍ୟର ଆଧାର
ତୁମ ନାମ ଜପୁଥିଲି
ନଘୁଞ୍ଚିଲା ଦୁଃଖ ନଶୁଣିଲ ଡାକ
ଲୋତକ ଜଳେ ବୁଡ଼ିଲି ।୧।

ମନକୁ ବୁଝାଇ ବଡ଼ଦାଣ୍ଡ ଧୂଳି
କେତେଆଉ ବୋଳିହେବି
ନୀଳଚକ୍ର ଚାହିଁ ପକ୍ଷପାତ ନୀତି
କେତେଆଉ ମୁଁ ସହିବି
ନିରାଶେ ଯାଉଛି ଦୁଆରୁ ତୁମରି
ଭାଗ୍ୟକୁ ମୋର ଆଦରି ॥୨॥

■ ■ ■





## ୪

କେତେ ପୁଣ୍ୟ ସତେ ଫୁଲକଳି ଯେତେ
ତୁମେ ସବୁ କରିଅଛ
ଶ୍ରୀମନ୍ଦିରେ ରହି ସଦା ପ୍ରଭୁଙ୍କର
ପାଦପଦ୍ମ ସେବୁଅଛ ।୦।

ଶୋଭା ପାଉଥାଅ କେବେ ମସ୍ତକରେ
କେବେ ପୁଣି ଚରଣରେ
ମାଳ ହୋଇ କେବେ ଝୁଲୁଥାଅ ବକ୍ଷେ
କେବେ କର କମଳରେ
ଧନ୍ୟ ତୁମେ ତୁମ ଜୀବନ ଜନମ
ଦେବକୃପା ଲଭୁଅଛ ।୧।

ଶୁଣୁଥାଅ ନିତି ପୂଜା ମନ୍ତ୍ରପାଠ
ପାଉଥାଅ ଦରଶନ
ଶ୍ରୀଅଙ୍ଗ ସେବିତ ଛଡ଼ାଫୁଲ ହୋଇ
ମୋହିନିଅ ଭକ୍ତମନ
ପରମ ସୁଖଦ ପରମ ଗତିର
ଭାଗ୍ୟ ତୁମେ ଅରଜିଛ ।।୨।।

■ ■ ■



୬

ଅକିଞ୍ଚନ କହ ଯଦି ତୁ ମାଆଲୋ
ନଚାହିଁବୁ ମୁହଁ ମୋର
ବାହୁନି ବାହୁନି କାନ୍ଦିବି ତୋ' ଆଗେ
ଧରି ପଦ୍ମ ପାଦ ତୋ'ର ।୦।

ତୁହି ପରା ଅଟୁ ସର୍ବ ଶକ୍ତିମୟୀ
ଦୁଃଖ ଶୋକ ହରିନେଉ
ପଣତରେ ଢ଼ାଙ୍କି ପୋଛିଦେଉ ଲୁହ
ପାପ ତାପ ଧୋଇ ଦେଉ
ଅଧରରୁ ହସ ଢ଼ାଳି ଦେଇ କରୁ
ଜୀବାତ୍ମାର ସୁବିଚାର ।୧।

ଧର୍ମ, ଅର୍ଥ, କାମ ମୋକ୍ଷ ପ୍ରଦାୟିନୀ
କଲ୍ୟାଣୀ ତୁ ସର୍ବଂସହା
ତିନି ଭୁବନରେ ନାମ ତୋ'ର ଶୁଭେ
କିଏ ବା ନଜାଣେ ଏହା
ଏତେ ଦୟାମୟୀ ହୋଇଣ ମୋ'ଠାରେ
କରିବୁନି ଅବିଚାର ।।୨।।

■ ■ ■



୭

ଜଗାରେ, ଦୋଷ ମୋ' ଧରିବୁ ନାହିଁ
ଯାଇ ମୁଁ ପାରୁନି ଶ୍ରୀକ୍ଷେତ୍ର ବୋଲିରେ
ଲେଖୁଚି ଚିଠି ସେ ପାଇଁ ।୦।

ଦୁଃଖ ଦେଲୁ ଯାହା ଗୀତ ହେଲା ତାହା
ଗାଉଛି ଦେଇ ତୋ' ସୁର
ଲୁହ ଦେଲୁ ଯାହା ନୀର ହେଲା ତାହା
ଢ଼ାଳୁଚି ପାଦରେ ତୋ'ର
ଯେମିତି ରଖୁଚୁ ରହିଚି ଭଲରେ
ଚିନ୍ତା ତୁ କରିବୁ ନାହିଁ ।୧।

ଆଶାଦେଲୁ ଯାହା ଦୀପହେଲା ତାହା
ଅନ୍ଧାରେ ଦେଖାଏ ରାହା
ଭାବଦେଲୁ ଯାହା ନଦୀ ହେଲା ତାହା
ଭସାଏ ମୋ' ପ୍ରାଣ ନାହା
ଜୁହାର ଜାଣିବୁ କୁଶଳେ ରହିବୁ
ରହୁଚି ମୁଁ ଆଜି ପାଇଁ ।।୨।।

■ ■ ■



୮

ଧରିଅଛି ପରା ଜୀବନଯାକ ମୁଁ
ପ୍ରଭୁ ତୁମ ଶ୍ରୀଚରଣ
ଧୂପଦୀପ ଜାଳି ନିତି କରୁଅଛି
ତୁମ ନାମ ସଂକୀର୍ତ୍ତନ ।୦।

ସୁଖଦୁଃଖ ମୋର ସମାନ ହୋଇଛି
ବିଷୟାବାସନା ପାଶୋରି ଦେଇଛି
ମାୟାମୋହ କିଛି ନପାରିବେ କରି
ଦିଅ ମୋତେ ଦିବ୍ୟଜ୍ଞାନ ।୧।

ଦେଇଛି ମୁଁ ମନ ଅଭୟପଦରେ
ଦେଖୁଛି ତୁମକୁ ସକଳ ଘଟରେ
ଦିବସ ରଜନୀ ବିତୁଛି ଧ୍ୟାନେ
କର ମୋତେ ପରିତ୍ରାଣ ॥୨॥

■ ■ ■



୯

କରୁଣାମୟ ସେ ଜଗାପାଇଁ ହସେ
ଏ ତିନିଭୁବନ ସାରା
ଉତୁଥାଏ ତା'ର ନେତ ବାରହାତ
ଭକତଙ୍କ ପାଇଁ ପରା ।୦।

ତା' ଯଶ ମହିମା ତା' ଗୁଣ ଗାରିମା
ନାହିଁ ଯାର ପଟାନ୍ତର
ତମୋ ଅବିନାଶୀ ତ୍ରିଗୁଣ ରହିତ
ସିଏ ବେଦମନ୍ତ୍ରସାର
ସକଳ ଘଟରେ ପ୍ରଣବ ଓଁକାର
ଅମୃତ ପ୍ରେମର ଧାରା ।୧।

ଭାବ ବିରହିତ ଭାବକୁ ନିକଟ
ସିଏ ବିଶ୍ୱ ଚରାଚର
ଦେବତାଙ୍କଠାରୁ ସୁରନର ଯାଏଁ
ସେବୁଥାନ୍ତି ପାଦତା'ର
ଅନାଦି ଅନନ୍ତ ପୂର୍ଣ୍ଣ ବ୍ରହ୍ମ ସେତ
ଭକତିରେ ଦିଏ ଧରା ।।୨।।

■ ■ ■



## ୧୦

କେତେ ଯତନରେ ଗଢ଼ି ଜଗତକୁ
ଜନମ ଦେଲ ହେ ପ୍ରଭୁ
କାହିଁକି ହେ ପୁଣି ରଖିଦେଲ ଏତେ
ଯାତନା ଦହନ ସବୁ ।୦।

ଆଲୋକ ପାଖରେ ରଖିଲ ଅନ୍ଧାର
ଆଶାର ସାଗରେ ନିରାଶା ଜୁଆର
ମାୟାର ହାଟରେ ଠିଆକରି କୁହ
ଏବେ କହ କ'ଣ ନେବୁ ।୧।

ଜୀବନପାଖରେ ରଖିଲ ମରଣ
ସୁଖକୁ କରିଲ ଦୁଃଖର କାରଣ
ରୋଗ ଶୋକ ଭୟ ଜାଲେ ଛନ୍ଦାଇଲ
ବୁଦ୍ଧି ହଜେ ଭାବୁଭାବୁ ।।୨।।





## ୧୧

ତୁମେ ପରା ପ୍ରଭୁ କରୁଣା ସାଗର
କରୁଣାର ମହାସିନ୍ଧୁ
କାହିଁକି ହେ ତେବେ ନପାଇଲି ମୁହିଁ
କାଣିଚାଏ କୃପାବିନ୍ଦୁ ।୦।

ଭକତମାନଙ୍କୁ ବାଣ୍ଟି ଦେଉଦେଉ
ସବୁ କିବା ଗଲା ସରି
ମୋ' ପାଇଁ ଟୋପାଏ ପାରିଲନି ରଖି
କଥା ମୋର ଗଲ ଭୁଲି
ଭୁଲିଗଲେ ତୁମେ କହିବି କାହାକୁ
ରଖବୋଲି ଦୀନବନ୍ଧୁ ।୧।

ଅନାଥ ମୁଁ ନୁହେଁ ଶୁଣ ଜଗନ୍ନାଥ
ତୁମେ ମୋର ମାତାପିତା
ତୁମ ପାଖେ ଅଳି କରି ମୁଁ କାନ୍ଦିବି
ପିଟିପିଟି ମୋର ମଥା
ଜାଣେ ନାହିଁ ଆଉ କିଛି ମହାବାହୁ
ତୁମେ ମୋର ପ୍ରାଣଇନ୍ଦୁ ।।୨।।





## ୧୨

ମନୁଆରେ,
ଜଗିରଖି ଧରମକୁ
ଫଳପାଇଁ ଆଶା ନରଖି ମନରେ
କରିଯାଆ କରମକୁ ।୦।

ଆଗକୁ ପଛକୁ ତୋର
ଭଲ ଅବା ମନ୍ଦ ପାଇଁ
ରହିଛନ୍ତି ନାରାୟଣ
ଶଙ୍ଖ ଚକ୍ର ହାତେ ନେଇ
ନିଷ୍କାମ ଭକତି ହୃଦୟରେ ରଖି
ଚିନ୍ତ ନିତି ଶ୍ରୀପଦକୁ ।୧।

ଧନ ମାନ ଯଶ ପାଇଁ
ହୁଅ ନାହିଁ ବିଚଳିତ
ମାୟାମୋହ କରିନେବ
ମନପ୍ରାଣ କବଳିତ
ପରମ ପଦରେ ନିଜକୁ ଅରପି
ଧନ୍ୟ କର ଜନମକୁ ।୨।





## ୧୩

ଭାବିଥିଲି ଜଗା ମୋ' ଘରକୁ ଦିନେ
ଆଣିଥାନ୍ତି ଡାକି ତୋତେ
ପିଢ଼ାରେ ବସାଇ ଧୋଇ ଦେଇଥାନ୍ତି
ପାଦ ତୋର ନିଜ ହାତେ ।୦।

ବାଢ଼ି ଦେଇଥାନ୍ତି ସୁନା ଥାଳିଆରେ
ଖିରିପୁରି ସରପୁଳୀ
ଆରିଷା କାକରା ମଣ୍ଡା ଛେନାପୋଡ଼
ମିଠାଫଳ ଭଳିଭଳି
ବଳେଇବଳେଇ ଖୁଆଇଥାଆନ୍ତି
ଲାଗିଥାନ୍ତା ଖୁସି କେତେ ।୧।

ହେଲେ ମୁଁ ଭାବୁଛି ଯଦି ଆଣେ ଡ଼ାକି
ଦେଉଳ ପଡ଼ିବ ଖାଲି
ଏ ସାରା ଜଗତ ହୋଇବ ଅନ୍ଧାର
ସବୁଠି ପଡ଼ିବ ହୁରି
ସେଥିପାଇଁ ଆଉ ଯାଉନାହିଁ ମୁଁ ଯେ
ଲାଗୁ ପଛେ ଦୁଃଖ ଯେତେ ।।୨।।





## ୧୪

ବିକଳ ହେଲା ପରାଣ ହେ ଆର୍ତ୍ତତ୍ରାଣ
ବହୁ ପଥଭ୍ରମି ଖୋଜିଲି ଅନେକ
ନପାଇଲି ଦରଶନ ।୦।

ବନଗିରି ପ୍ରାନ୍ତ ତଟିନୀ ସାଗରେ
ଭ୍ରମିଲି ସବୁଠି ତୁମରି ଆଶାରେ
କେମିତି ଜାଣିବି କି ରୂପେ କେଉଁଠି
ରହିଅଛ ଭଗବାନ ।୧।

ତୁମେ ବିଶ୍ୱମୟ ଅନନ୍ତ ଅସୀମ
ତୁମ ଲୀଳା ଖେଳା ଆଗମ ନିଗମ
ବୁଝି କି ପାରିବି ତୁମ ସୃଷ୍ଟି ସ୍ଥିତି
ମୁହିଁ ଛାର ଅକିଞ୍ଚନ ।୨।

ତୁମେ କରୁଣାର କ୍ଷମାର ମୂରତି
ଦୀନ ପତିତର ପ୍ରାଣର ଆରତି
ଦୟା ବହିବାରେ ମୋ' ମନ ମନ୍ଦିରେ
ବିଜେ କର ନାରାୟଣ ।।୩।।

■ ■ ■



## ୧୪

ଜଗାବଳିଆଙ୍କ ହାତେ ରାକ୍ଷୀ ବାନ୍ଧିବି
କୋଟି ଜନ୍ମ ତପସ୍ୟାର ଫଳ ପାଇବି ।୦।

ହାତଧରି ପିଢ଼ାରେ ତ ବସାଇ ମୁହିଁ
ଗଣ୍ଠିକରି ବାନ୍ଧିଦେବି ରାକ୍ଷୀକୁ ନେଇ
ଦହି ଛେନାପୋଡ଼ ତାଙ୍କୁ ଖୁଆଇ ଦେବି ।୧।

ବଡ଼ଭାଇ ହେବେ ମୋର ରୋହିଣୀ ସୁତ
ସାନଭାଇ ହେବେ ମୋର ଜଗତନାଥ
ଏଇ ଭବ ବଇକୁଣ୍ଠ ମୁଁ ଯେ ଭାବିବି ।୨।

ନଲାଗିବ ଆଉ ମୋତେ ଭୟକି ଡର
ଜଗାବଳିଆ ଯେ ସାହା ହୋଇବେ ମୋର
ପାଦୋଦକ ପିଇ ସୁଖେ ମୁଣ୍ଡେ ମାରିବି ।।୩।।





## ୧୬

କେଉଁଠି ରହିଲ ବେନିଭାଇ ତୁମେ
ରାକ୍ଷୀ ଯେ ବାନ୍ଧିବା ପାଇଁ
ମୁଁ ପରା ତୁମର ସୁଭଦ୍ରା ଭଉଣୀ
ବସିଛି ବାଟକୁ ଚାହିଁ ।୦।

ବନ୍ଦାଣ ଥାଳିରେ ସଜାଇ ରଖିଛି
ରାକ୍ଷୀକୁ ଯତନେ କେତେ
କେତେ ସରାଗରେ ବାନ୍ଧିଦେବି ବୋଲି
ତୁମ ଦୁହିଁଙ୍କର ହାତେ
ବେଳ ଗଡ଼ିଯାଏ ଆସିଯାଅ ଏବେ
କୁଆଡ଼େ ରହିଲ ଯାଇ ।୧।

ବରଷକେ ଥରେ ଏଇ ଦିନଟିକୁ
ଭୁଲିଯିବ ମନୁ ଯେବେ
ମୁଁ ଯେ ଅଲିଅଳି ଭୋକ ଉପାସରେ
ବସି ରହିଥିବି ତେବେ
ହାତ ଓଠ ଧରି ଯେତେ ବୁଝାଇଲେ
ଜମାଁରୁ ବୁଝିବି ନାହିଁ ॥୨॥





## ୧୭

ନ ଯା କଳା କହ୍ନାଇରେ ଯମୁନାତୀର
ଉଛୁଳିଚି କୂଳଚାହିଁ ଭରିଚି ନୀର ।୦।

ଘୋଟି ଅଛି କଳାମେଘ ଆକାଶସାରା
ଘଡ଼ଘଡ଼ି ବିଜୁଳିରେ ଥରୁଚି ଧରା
ବଢ଼ିଅଛୁ ଗେହ୍ଲା ହୋଇ ଲାଗିବ ଡ଼ର ।୧।

ଘରେ ବସି ଝୁଲଣାରେ ଝୁଲ ତୁ ଯାଇ
କ୍ଷୀରସର ଲବଣିତୁ ଖାଉଥା ନେଇ
ସାଙ୍ଗ ସାଥୀ ଖେଳିବାକୁ ଆସିବେ ତୋର ।୨।

ଗୋପକୂଳ ଚନ୍ଦ୍ରମାତୁ ରାଧାର ପ୍ରାଣ
ଯଶୋଦାର କୋଟିନିଧି ପରାଣଧନ
କଳାଚାନ୍ଦ ମାନମନା କଥାକୁ ମୋର ।।୩।।





## ୧୮

ପ୍ରଭୁହେ... ଗୁହାରି ମୋ' ଶୁଣ ପ୍ରଭୁହେ
ବାଟ ମଝିଟାରେ ଏକା କରି ମୋତେ
ଯାଅ ନାହିଁ ଚାଲି ତୁମେ ହେ ।୦।

ଘନ ତମସାରେ ଗରଜୁଛି ନିଶା
ମାୟା ଅନ୍ଧକାରେ ହଜିଛି ମୋ' ଆଶା
ହାତ ମୋର ଧରି ଦେଖାଅ ସରଣୀ
ତୁମ ସାଥେ ନେଇ ଯାଅହେ ।୧।

ଅବିଦ୍ୟାରେ ପଡ଼ି ଦୁଃଖ ଦାବାନଳେ
ଆଖି ଲୁହ ପିଇ ମୁଁ ଯେ ନିତି ଜଳେ
ତୋଳି ନିଅ ମୋତେ ଦୁଃଖ ଦାବାନଳୁ
ଢ଼ାଳି ଦେଇ କୃପା ବାରି ହେ ।୨।

କଣ୍ଠରେ ମୋ' ଦିଅ ସ୍ୱର ତୁମ ପାଇଁ
ଗାଉଥିବି ଗୀତ ତୁମ ନାମ ଗାଇ
କରଯୋଡ଼ି କରେ ମିନତି ଚରଣେ
ଶୁଣ ଏ ଦୀନର ଡ଼ାକହେ ।।୩।।

■■■



## ୧୯

ମୋ' ଠାକୁର ଯଦି କନ୍ଦାଇବ ମୋତେ
ସେଇ ବି ତ ଭାଗ୍ୟ ମୋର
ମୁହଁ ଖୋଲି ଦିନେ କହିବିନି କିଛି
ତମେ ମୋର ଆପଣାର ।୦।

ମାଗିବା ଆଗରୁ ମନଜାଣି ମୋର
ସବୁତ ଦେଇଛ ମୋତେ
ଭାଇବନ୍ଧୁହୋଇ ଭଲମନ୍ଦ କଥା
ବୁଝିଛ ପୁଣି ଯେ କେତେ
ଦେଲ ବୋଲି ଲୁହ ଭାବିବି କି ଆଜି
କରିଦେଲ ସାତପର ।୧।

ହସ ଲୁହ ଅଟେ ସମୟର ଛାଇ
କେବେ ଅଛି କେବେ ନାହିଁ
ସେହି କଥାଭାବି ଅଭିମାନ ମନେ
ପାରିବିନି ଦୂରେ ରହି
ଛନ୍ଦାଚରଣରେ ବନ୍ଧା ପଡ଼ିଥିବି
ବନ୍ଧାଦେଇ ମନମୋର ।।୨।।

■ ■ ■



## ୨୦

ଫୁଲଠାରୁ ବାସ ଅଲଗା ଯେମିତି
ହୁଏ ନାହିଁ କେବେହେଲେ
ସେମିତି ତୋ' ଠାରୁ ଅଲଗା କେବେ ବି
ହେବିନାହିଁ କାଳିଆରେ ।୦।

ଯେତେ ଦିନ ଯାଏଁ ରହିଥିବି ମୁଁ ଯେ
ଏଇ ଧୂଳି ଧରଣୀରେ
ସେତେ ଦିନ ଯାଏଁ ରହିଥିବୁ ତୁହି
ମୋର ମନ ଗହନରେ
ହୃଦୟରେ ନିତି ତୋ'ର ରୂପଛବି
ଦେଖୁଥିବି ଆନନ୍ଦରେ ।୧।

ଯହିଁ ଯାଉଥିବି ତହିଁ ନେଉଥିବି
ମୋ' ସାଥିରେ ସାଥିକରି
ଆସେ ଯଦି ଝଡ଼ ହାତକୁ ତୋହର
ଧରିଥିବି ଆଣ୍ଟକରି
ତୋ'ପାଇଁ ହସିବି ତୋ' କାନ୍ଦିବି
ଥିବା ଯାଏଁ ଜୀବନରେ ।।୨।।





## ୨୧

ବାଇ ମନରେ ମନକୁ ତୋ'ର
                    କରନି ମାୟା ବଶ
ମାୟାରୁ ଜାତ ହୋଇବ ପାପ
                    କରିବ ସର୍ବନାଶ ।୦।

ବିଷୟାବାସନା ମନରୁ ତେଜ
                    ପରାମାତ୍ମା ବାଣୀ ହୃଦୟେ ହେଜ
ଭକତି ଭରେ ପ୍ରଭୁଙ୍କ ନାମ
                    ଭଜରେ ଅହର୍ନିଶ ।୧।

ସୁଖ ଦୁଃଖକୁ ତୁ ସମାନମଣ
                    ବିଭୁ ପଦ୍ମ ପାଦେ ଶରଣ ଘେନ
ଦେଖିବୁ ତୋ'ର  ଅନ୍ତରେ ବିଜେ
                    ହୋଇବେ ପୀତବାସ ।।୨।।





## ୨୨

କେତେ ସେନେହରେ ପ୍ରଭୁ ତୁମେ ନିତି
ପାଳୁଥାଅ ଏ ସଂସାର
ସଭିଏଁ ତୁମର କେତେ ଆପଣାର
ତୁମେ ପୁଣି ସଭିଙ୍କର ।୦।

ଭକତ ପାଖରେ ତୁମେତ ଭକତି
ଜ୍ଞାନୀପାଖେ ମହାଜ୍ଞାନ
ଯୋଗୀ ପାଖେ ଯୋଗ ଭୋଗୀ ପାଖେ ଭୋଗ
ଗୁଣୀ ପାଖେ ଦିବ୍ୟ ଗୁଣ
କେତେ ରଙ୍ଗେଥାଅ ସକଳ ଘଟରେ
ତୁମେ ବିଶ୍ୱ ଚରାଚର ।୧।

ସାଗର ବିଚିରେ ଜୁଆର ତୁମେ ଯେ
କବିର କବିତାସୁର
ମାନୀପାଖେ ମାନ ଧନୀପାଖେ ଧନ
ତପ ଅଟ ତପସ୍ୱୀର
କି ବିଚିତ୍ର ତୁମ ଲୀଳା ଖେଳା ସବୁ
ହେ ମହାନ କଳାକାର ।।୨।।







## ୨୩

ଜୟ ତେଜୋମୟ ଜୟ ଗୁଣମୟ
ଜୟ ନିର୍ଗୁଣ ହେ ରାମ
ନବୀନ ନୀରଦ ଶ୍ୟାମ ନବଘନ
ଚିର ସୁନ୍ଦର ହେ ରାମ ।୦।

ରଘୁକୁଳ ଚନ୍ଦ୍ର ଦଶରଥ ସୁତ
କଉଶଲ୍ୟା ପ୍ରାଣଧନ
ଅଯୋଧ୍ୟା ନରେଶ ପୁରୁଷ ଉତ୍ତମ
ଜାନକୀ ଜୀବ ଜୀବନ
ଦଇତ୍ୟ ନାଶନେ କୋଦଣ୍ଡ ଧାରଣ
ରାଜୀବଲୋଚନ ରାମ ।୧।

ପିତା ଆଜ୍ଞାକାରୀ ସଦା ସତ୍ୟଚାରୀ
ଜଟାଧାରୀ ବନଚାରୀ
କ୍ଷମାର ମୂରତି ତ୍ରୟତାପ ହାରି
ଅହଲ୍ୟା ଉଦ୍ଧାରକାରୀ
ଆନନ୍ଦଦାୟକ କଳୁଷନାଶକ
ପତିତପାବନ ରାମ ।।୨।।







## ୨୪

ଆଖିର ଲୁହକୁ ଲୁଚାଇ ଦେଇଛି
ପ୍ରଭୁ ତୁମ ପାଇଁ ଖାଲି
କାଳେ ଏ ଜଗତ ଜାଣିଯିବ ତୁମେ
ଡ଼ାକ ଶୁଣନାହିଁ ବୋଲି ।୦।

କେତେ କଥା ହବ ଭକତ କାନ୍ଦିବେ
ହାତଦେଇ କପାଳରେ
ଭୋଗରାଗ ନେଇ ଆସିବେ କେମିତି
ଆଉ କେଉଁ ଶରଧାରେ
ଆଶାଭରସାର ସୂତା ଛିଣ୍ଡିଯିବ
ନିରାଶାରେ ଜଳିଜଳି ।୧।

ସହିଯିବି ସବୁ ଯାତନା ଜୀବନେ
ନୀଳଚକ୍ର ବାନା ଚାହିଁ
ଆସୁଥିବି ନିତି ସଞ୍ଜ ସକାଳରେ
ତୁମ ଦରଶନ ପାଇଁ
ଜଗତରେ ଥାଉ ତୁମ ନାମ ଯଶ
କୋଟି କୋଟି ଯୁଗ ଧରି ।।୨।।





## ୨୫

ସୁଖ ପାଖେ ଦୁଃଖ ରହିଥାଏ ସଦା
ବଡ଼ ବିଷମ ଏ ଜୀବନ
ଏକାସିନା ପ୍ରଭୁ ହୋଇବେ ସହାୟ
କରିବେ ଦୁଃଖରୁ ତାରଣ ।୦।

ଚାଲି କିବା ହେବ ଜୀବନପଥରେ
ସାଥୀକରି ମାୟା ମୋହ
ମାୟା ମୋହ ପରା ଦୁଃଖର କାରଣ
ଆଣିଦେବ ଶୋକ କୋହ
ଆଶା ବଦଳରେ ମିଳିବ ନିରାଶା
ଲୁହର ଦାରୁଣ କଷଣ ।୧।

ଜନମି ଥିଲେ ଏ ମହିମଣ୍ଡଳରେ
ଦିନେ ଆସିବ ମରଣ
ମରଣ ପରେ ବି ଆତ୍ମାର କେବେତ
ହୁଏ ନାହିଁ ଅବସାନ
ପୁଣ୍ୟବଳେ ସିନା ଲଭିଥାଏ ଆତ୍ମା
ପରମାତ୍ମାଙ୍କର ଚରଣ ।।୨।।



## ୨୬

ପଞ୍ଚଭୂତେ ଗଢ଼ା ଏ ଶରୀର ଦିନେ
ମାଟିରେ ତ ମିଶିଯିବ
ଆତ୍ମା ମିଶିଯିବ ପରମାତ୍ମା ପଦେ
ପୁଣ୍ୟ ଯେବେ କରିଥିବ ।୦।

ପଞ୍ଚଇନ୍ଦ୍ରିୟର ସୁଖେ ହଜନାହିଁ
ଶୁଣିବାରେ କାନ ଡେ଼ରି
ପଞ୍ଚଜନ୍ୟ ଶଙ୍ଖ ବାଜୁଛି ଶୂନ୍ୟରେ
ବଜାଉଅଛନ୍ତି ହରି
ଶ୍ରବଣ ମାତ୍ରକେ ବିଷୟା ବାସନା
ମାୟା ମୋହ ଦୂର ହେବ ।୧।

ପଞ୍ଚମ ରାଗରେ ପରାଣ ବୀଣାରେ
ବାଜିବ ଭକତି ସ୍ୱର
ପଞ୍ଚତ୍ୱ ପ୍ରାପ୍ତିର ବେଳ ଆସିଗଲେ
ନ ଲାଗିବ ଆଉ ଡ଼ର
ଦେଖାଦେବେ ପ୍ରଭୁ ଦରଶନେ ଜୀବ
ଶ୍ରୀପଦରେ ଲୀନ ହେବ ।।୨।।

■ ■ ■



## ୨୭

ଘର ଦୁଆରରେ ଚିତା ପକାଇଛି
ଫୁଲ ଲତା ଭଳିଭଳି
କହିଚି କାଳିଆ ରାଣ ଦେଇ ମୋତେ
ଘରକୁ ଆସିବ ବୋଲି ।୦

ତା' ଲାଗି କରିଛି ଖିରି ଛେନାମଣ୍ଡା
ପୁରି ଖେଚୁଡ଼ି ଆମ୍ବିଳ
ରଖିଚି ପଖାଳ ଶାଗ ଖୁଦଭଜା
ଦହି ଲବଣି ତାମ୍ବୁଳ
କେତେ ଭାଗ୍ୟ ଆଜି ସତରେ ମୋହର
କାଳିଆ ଆସିବ ବୁଲି ।୧।

ଚହଟ ଚିକ୍କଣ ସୁନ୍ଦରିଆ ବୋଲି
ଡ଼ରଲାଗେ ଭାବି କାଳେ
ଲାଗିଯିବ କିବା ନଜର କାହାର
ବାଟରେ ଆସିବା ବେଳେ
କି କଥା କହିବି କଣ ମୁଁ କରିବି
ମନରେ ହେଉଚି ଭାଳି ।।୨।।





## ୨୮

ପାଗଳା  ମନଆରେ...
ଦେଖ ଅନ୍ତରକୁ ଚାହିଁ
ବିଜେ ହୋଇଛି ସେ  ଗଦାପଦ୍ମଧାରୀ
ଦେଖିତୁ ପାରିବୁ ତହିଁ ।୦।

ବଡ଼ଦାଣ୍ଡ ତା'ର  ମନଟି ତୋହର
ହୃଦୟ ତୋହର  ତା' ବଡ଼ ଦେଉଳ
ଭକତି ତୋହର  ତା' ଗରୁଡ଼ ଖମ୍ବ
ଜ୍ଞାନଦୀପ ଜାଳ ଯାଇ ।୧।

ତା' ବିଜୟ ନେତ  ଚେତନା ତୋହର
ତୋ' ଶରୀରେ  ଘଟ ରତ୍ନବେଦୀ ତା'ର
ତୋ' ମୁଖରେ  ଭାଷା  ତା'ର ପୂଜାମନ୍ତ୍ର
ନାମ ତା'ର ଯାଅ ଗାଇ ।।୨।।





## ୨୯

କେଉଁ ସାଧନାରେ ଖୁସି ହେବପ୍ରଭୁ
କହିବକି ମନଖୋଲି
ସେଇ ସାଧନା ମୁଁ କରିବି ଆନନ୍ଦେ
ତୁମ ପଥ ଅନୁସରି ।୦।

ସମ୍ବଳ ବୋଲି ମୋ' ପାଖରେ ରହିଛି
ଭକତିର ମୁଠେ ଫୁଲ
ଦୁନିଆର ଯେତେ ଧନ ଦଉଲତ
ନୁହେଁ ଯା'ର ସମତୁଲ
ସେଇ ଫୁଲ ଦେଇ ତୋଷିବି ପରାଣ
ନୟନର ଲୁହ ଢ଼ାଳି ।୧।

କେମିତି କରିବି ଗୁହାରି ଛାମୁରେ
ଜାଣିନାହିଁ ପୂଜା ବିଧି
କେମିତି କହିବି ପାଦ ସେବାଲାଗି
ଝୁରି ହୁଏ ନିରବଧି
ମନ ବୀଣା ତାରେ ପ୍ରଣବ ଓଁକାର
ନାମ ଜପୁଥାଏ ଖାଲି ।୨।

■ ■ ■





## ୩୦

ଜହିଦେରେ ବାଟ ଜଗା
ତୋ' ଭକତ ଘରକୁ
ମନକଥା କେତେ ଅଛି
ପଚାରିବି ତାହାକୁ ।୦।

ପଚାରିବି କେଉଁ ନାମେ
କରୁଅଛି ଜପତପ
କେଉଁ ଜଳେ ଧୋଇ ପାଦ
ଜାଳୁଅଛି ଧୂପଦୀପ
କେଉଁ ଫୁଲ ଫଳ ଦେଇ
ତୋଷୁଅଛି ମନକୁ ।୧।

କରି ବ୍ରତ ଉପବାସ
ରହିଛି କି ଯୋଗୀ ପରି
ଦରଶନ କରୁଛି କି
ତୀର୍ଥସ୍ଥାନ ବୁଲିବୁଲି
ପିନ୍ଧିଛିକି ବସନ ସେ
ଲେଖି ତୋ'ର ନାମକୁ ।।୨।।





## ୩୧

ସବୁଦିନ ପରି କାଳିଆରେ କାଳି
ବସିଥିଲି ବାଟ ଚାହିଁ
କେତେବେଳେ ନିଦେ ଶୋଇପଡ଼ିଲି ମୁଁ
ଜାଣିତ ପାରିଲି ନାହିଁ ।୦।

ସପନେ ଦେଖିଲି ଆସିଛୁ ପାଖକୁ
ହସୁଛୁ ତୁ ମୋତେ ଚାହିଁ
ଅପରୂପ ତୋ'ର ତନୁର ଲାବଣ୍ୟ
ପଲକେ ମୋ' ଗଲା ରହି
ତ୍ରିଭଙ୍ଗୀ ଠାଣିରେ ବଜାଇଲୁ ଧରି
ମୁରଲୀ ହାତରେ ନେଇ ।୧।

ମନ ମୋ' ହଜିଲା ଲୋତକ ଝରିଲା
ପାଇ ତୋ'ର ଦରଶନ
ପୋଛି ଦେଲୁ ଲୁହ ଝିନବସନରେ
ଭାଙ୍ଗିଗଲା ମୋ' ସପନ
କାନ୍ଦୁଛି ଏବେ ମୁଁ ଲବଣିରୁ ଟିକେ
ଖୁଆଇ ପାରିଲି ନାହିଁ ।।୨।।





## ୩୨

ମଉନ କାହିଁକି କାହ୍ନୁ
ଭକତ ଡ଼ାକନ୍ତି ଦରଶନ ପାଇଁ
ଶୁଣନାହିଁ ତୁମେ ଯେଣୁ ।୦।

ମଣିମା ହେ ରଖ ବୋଲି କାହା ଡ଼ାକେ
ଯାଇଥିଲି କି ହେ ଧାଇଁ
ତରବର ହୋଇ ଯାଉ ଯାଉ ବାଟେ
ଝୁଣ୍ଟି ପଡ଼ିଲକି କାହିଁ
ଛିଣ୍ଡିଲାକି ତୁମ ପାଟ ପିତାମ୍ବର
ଶୁଖାଇଛ ମୁହଁ ତେଣୁ ।୧।
ପଥଶ୍ରମ ଭାରେ ବହିଲାକି ଦେହୁ
ବିନ୍ଦୁ ବିନ୍ଦୁ ହୋଇ ଝାଳ
ଧୋଇଲାକି ଚୁଆ ଚନ୍ଦନର ଚିତା
ମଉଳିଲା ଫୁଲମାଳ
ହଜିଲାକି କାହିଁ ଚଉସରି ହାର
ହାତର ମୋହନ ବେଣୁ ।।୨।।





## ୩୩

ଜାଣେନାହିଁ ଏ ଜୀବନେ
କେତେ ପୁଣ୍ୟ ଅରଜିଛି
ଜାଣେନାହିଁ ଦାନଧର୍ମେ
କେତେଫଳ ପାଇଅଛି ।୦।

ପୁଣ୍ୟମୟ ତୁମ ନାମ
ଆନନ୍ଦର ମଧୁବନ
ହଜିଛି ସେ ମଧୁବନେ
ଦିବାନିଶି ଅନୁକ୍ଷଣ
ଶୟନେ କି ସପନରେ
ତୁମ ରୂପ ଦେଖିଅଛି ।୧।

ଲୋଡ଼ିନାହିଁ ଦିନେ ହେଲେ
ଯଶଖ୍ୟାତି ସନମାନ
ପାଇବାକୁ ଗୋପ ଲକ୍ଷ୍ମୀ
କରିନାହିଁ ଅଭିମାନ
ମୋର ବୋଲି ସବୁକିଛି
ତୁମ ପାଦେ ଅରପିଛି ॥୨॥





## ୩୪

ଜଗା କାଳିଆ ତୁ ମୋତେରେ
କରିଦେ ଭକତ ତୋ'ରରେ
ରତନବେଦୀରୁ ଆସିଯା' ଓହ୍ଲାଇ
ତୋ' ସିଂହଦୁଆରେ ଡାକେରେ ।୦।

ବାଇଶି ପାହାଚ ଲୋତକ ଦେଇ
କେତେ ଯତନରେ ଦେଇଚି ଧୋଇ
ପିନ୍ଧା ବସନରେ ପୋଛିଚି ସରାଗେ
ତୁ ଆସିବୁ ବୋଲି ପରାରେ ।୧।

କଳାତୁଳସୀରେ ଗୁନ୍ଥିଚି ହାର
ସଜାଡ଼ିଚି ପୂଜା ବନ୍ଦାଣ ଥାଳ
ଜାତି ଜାତି କେତେ ମିଠା ଫଳମୂଳ
ଆଣିଚି ତୋ' ପାଇଁ ଖୋଜିରେ ।୨।

ତୁହି ଅଟୁ ବୋଲି ସଂସାରେ ସାର
ଆସିଛି ମୁଁ ଆଜି ତୋହରି ଦ୍ୱାର
ଲଲାଟରେ ଚିତା କରି ଲଗାଇଛି
ତୋ' ଦାଣ୍ଡର ଧୂଳି ନେଇରେ ।।୩।।





## ୩୫

ଆଷାଢ଼ ଦ୍ୱିତୀୟା ଆସିଲା
ଗୁଣ୍ଡିଚା ଯାତକୁ ଆଣିଲା
ତିନି ରଥେ ବିଜେ ହେଲେ ତିନି ଦିଅଁ
ହୁଳହୁଳି ଶଙ୍ଖ ବାଜିଲା ।୦।

ତାଳଧ୍ୱଜେ ଦେଖ ବିଜେ ବଳିଆ
ନନ୍ଦିଘୋଷେ ବିଜେ ଜଗା କାଳିଆ
ଦେବଦଳନରେ ହଳଦିଆ ଚାନ୍ଦ
ରଥଚକ ଗଡ଼ି ଚାଲିଲା ।୧।

ସବୁ ଯାତଠାରୁ ବଡ଼ ଏ ଯାତ
ଫରଫର ଉଡ଼ି ବିଜୟ ନେତ
ସାନବଡ଼ ନାହିଁ ସଭିଏଁ ସମାନ
ଏଇ ବଡ଼ କଥା କହିଲା ।୨।

ବଡ଼ ଦରଦୀ ସେ ତିନିଠାକୁର
ବୁଝନ୍ତି ସେ ଦୁଃଖ ଦୁଃଖୀ ମନର
ବାଣ୍ଟନ୍ତି କରୁଣା କରନ୍ତିନି ଊଣା
ଭକତିରେ ଯିଏ ଡାକିଲା ।।୩।।





## ୩୬

ବରଷକେ ଥରେ ନନ୍ଦିଘୋଷ ରଥେ
ଆସିଥିଲୁ ବୁଲିବାକୁ
କେତେ ଚଞ୍ଚଳରେ ସରିଗଲା ଦିନ
ସଜହେଲୁ ଫେରିବାକୁ ।୦।

ଗହଳ ଚହଳ ଲାଗୁଥିଲା କେତେ
ନିତି ସଞ୍ଜ ସକାଳରେ
ନିରିଭୟ କେତେ ଲାଗୁଥିଲା ସତେ
ଥିଲୁ ବୋଲି ତୁ ପାଖରେ
ଆସୁଥିଲି ଧାଇଁ ସବୁ ଦିନେ ତୋତେ
ମନକଥା କହିବାକୁ ।୧।

ବାହୁଡ଼ି ତୁ ଯିବୁ ଭାବିଲା ବେଳକୁ
ମନରେ ଉଠୁଛି କୋହ
ଋଣୀ କରିଗଲୁ ସେନେହରେ ତୋ'ର
ଝରିଯାଏ ଆଖି ଲୁହ
କିବା ଦେବି ତୋତେ ନିଜେ ତ ଭିକାରି
ଚାହିଁଛି ମୁଁ ତୋ' ହାତକୁ ।।୨।।





## ୩୭

ଆହେ ପ୍ରଭୁ ତୁମ କରୁଣାର ବାରି
ଢାଳି ଦିଅ ମୋର ଶିରେ
ମନ ମୋର ହେଉ ତୁମ ରତ୍ନବେଦୀ
ବିଜେ ହୁଅ ତହିଁ ପରେ ।୦।

ଜୀବନର ପଥ ବଡ଼ କଣ୍ଟକିତ
ପାଦେ ପାଦେ ଚୋରାବାଲି
ଭୟଲାଗେ କାଳେ ଚାଲୁଚାଲୁ ଯିବି
ତୁମଠାରୁ ଦୂରେ ଚାଲି
କେଉଁଠି ଖୋଜିବି ତୁମକୁ ହେ ଦେବ
ଏତେ ବଡ଼ ଏ ସଂସାରେ ।୧।

ତୁମରି ପରଶେ ପୁଣ୍ୟମୟ ହେବ
ମାଟିପିଣ୍ଡ ଏ ଶରୀର
ଦିବ୍ୟ ଆଲୋକରେ ହେବ ଆଲୋକିତ
ବେଳାଭୂମି ଚେତନାର
ସତ୍ୟଶିବ ତୁମ ସୁନ୍ଦର ମୂରତି
ଦେଖୁଥିବି ନିରନ୍ତରେ ॥୨॥





## ୩୮

ଜୀବନ ସଉଦା କେତେ କରୁଥାଉ
ଅନ୍ତିରେ ତୁ ଧନ ନେଇ
ପୁଣ୍ୟ ନୀଳାଚଳେ ପୁଣ୍ୟ ଦାରୁ ରୂପ
ଦରଶନ କରଯାଇ ।୦।

ମାଣ ପୁରିଗଲେ ସେରକ ପୁରିବ
ପାଚିଗଲେ ତାଳ ଝଡ଼ିତ ପଡ଼ିବ
ଜଗତରେ କିଛି ନୁହେଁ ଚିରଦିନ
ବୁଝୁ ନାହୁଁ କାହିଁ ପାଇଁ ।୧।

ତେଇଁ ଶୋଇଥିଲେ ଉଠାଇବ କିଏ
ଶୋଇଲା କପାଳେ ଭାଗ କିବା ଥାଏ
ସବୁ ସରିଗଲେ ଖୋଜିଲେ ତୁ ଆଉ
କିଛିତ ପାଇବୁ ନାହିଁ ।୨।

ଚକାଡୋଳିଆ ସେ ଜଗା କାଳିଆକୁ
ଶୟନେ ସ୍ୱପନେ ଚିନ୍ତରେ ତାହାକୁ
ସେବକ ପଣରେ ହୁଅ ତା' ଭାଜନ
ତା' ନାମକୁ ଗାଇ ଗାଇ ।।୩।।





## ୩୯

କିଆଗଛ ଧାଡ଼ିଧାଡ଼ିରେ,  କିଆଗଛ ଧାଡ଼ି ଧାଡ଼ି
ପରମ ପଦରେ ଶରଣ ଗଲେ ତୁ
ନଆସିବ ଦୁଃଖ ମାଡ଼ି ।୦।

ନଈ ଆର କୂଳେ  କାଳିଆର ଗାଆଁ
କଳାମେଘ ଦେଖି  ଡ଼ରିଯାଉ କିଆଁ
ବେଗେ ବେଗେ ଯାଅ  ସୁଅ କାଟିବାରେ
ଡର ଭୟ ମନୁ ତଡ଼ି ।୧।

ସରଗକୁ ଉଞ୍ଚା  ନିଶୁଣି ପଡ଼ିଚି
ତଳେ ବିଷୟାର  ଅଗନି ଜଳୁଚି
ଚଉବାହା ନାମେ  ମନେଧରି ଆଣ୍ଟ
ନିଶୁଣିରେ ଯାଅ ଚଢ଼ି ।୨।

ମୁକତି ଦୁଆର  ଅଛି ଖୋଲା ରହି
ମାୟା ଅହିରାଜ  ଜଗିଅଛି ତହିଁ
ଚକା ଡ଼ୋଳିଆର  ନାମ ଗଦେ ସେ ତ
ବାଟ ଦେବ ଆପେ ଛାଡ଼ି ।।୩।।





## ୪୦

କଉଡ଼ିମାଳିରେ କଉଡ଼ିମାଳି
ବଡ଼ ହଟିଆ ସେ କଳାଚାନ୍ଦ ପାଖେ
ମନ ମୋର ବନ୍ଧାଦେଲି ।୦।

କି ମଧୁର ହସ ସତରେ ତା'ର
ହସି ବାନ୍ଧିଦେଲା ପୀରତି ଡୋର
ସବୁଠି ଦିଶିଲା ରୂପଟା ତାହାର
ଭୋକ ଶୋଷ ଗଲି ଭୁଲି ।୧।

ଗୁନ୍ଥିଲି ତା' ପାଇଁ ଫୁଲର ମାଳ
ସଜାଡ଼ିଲି ବସି ପୂଜାର ଥାଳ
ଧୂପଦୀପ ଜାଳି ନାମ ତା'ର ଜପି
ସବୁସୁଖ ପାଇଗଲି ।୨।

ଭାରି ସୋହାଗ ସେ ଜାଣେରେ କରି
ଆଖି ବୁଜିଦେଲେ ଆସଇ ଥିରି
ମରମକୁ ଛୁଇଁ ବଜାଏ ମୁରଲୀ
ଖାଲି ରାଧା ରାଧା ବୋଲି ।।୩।।





## ୪୧

ଗହନ ବନରେ, କିଏ କାନ୍ଦେ କହିଁ କହିଁ
ସିଏ ପରା ତୋ'ର ମନରେ ବାଉଳା
ତୋ' ବିନା ନୁହଇ କେହି ।୦।

ଘନ ତିମିରରେ ବାଟ ଗଲୁ ଭୁଲି
ଦିବ୍ୟ ଆଲୋକଠୁ ଦୂରେ ଗଲୁ ଚାଲି
ଯାତନାର ଅହି ଚାଲୁଛି ସାଥିରେ
ଡରାଉଛି ରହି ରହି ।୧।

ମାୟା କଦମ୍ବରେ ଚିତ୍ତ ହଜାଇଲୁ
ସାରୁ ଗଛମୂଳେ ଘର ତୁ ବାନ୍ଧିଲୁ
ମାଡ଼ି ଆସେ ବଢ଼ି ଚିନ୍ତ ରାମହରି
ଶରଣ ତୁ ଘେନ ଯାଇ ।।୨।।





## ୪୨

ବିଜେ ହୋଇଛନ୍ତି ପ୍ରଭୁ
କାହିଁକିରେ ଭୁଲୁମନ
ମାଟି ପିଣ୍ଡ ଘଟେ ତୋ'ର
ତାଙ୍କ ପୂଜା ଉପଚାର ।୦।

ପୁରାଇଛୁ ମନେ କେତେ
ଲୁଣ ଖାଏ ହାଣ୍ଡିପରି
ଛଅ ଖଣ୍ଡ କାଠେ ଶେଷେ
ବିଷୟାର ଚିନ୍ତାକୁ
ଖାଇଯିବ ଦେହକୁ
ବନ୍ଧାହେବ ତୋ' ଶରୀର ।୧।

ମୋର ମୋର କହି ଯେତେ
ସେ ଧନକି ଦେବ ତୋତେ
ନରକରେ ଘାଣ୍ଟି ହେବୁ
ସଞ୍ଚିଥିବୁ ଧନକୁ
ମୁକତିର ସୁଖକୁ
ଯିବୁ ଯେବେ ଯମପୁର ।୨।

ବେଳ ଥାଉ ଥାଉ ମନ
ଶରଣ ତୁ ଘେନ ତାଙ୍କ
ଉଦ୍ଧାର କରିବେ ପ୍ରଭୁ
ନାମ ଯଜ୍ଞ ପାଇଁ କି
ମନେ ତାଙ୍କୁ ଧାଇକି
ମାନ ଦେବେ ଭକତର ।।୩।।





## ୪୩

ଦୁଃଖ ଦେଇ ଯେତେ ପରଖିବ ମୋତେ
ପରଖ ହେ ମହାବାହୁ
ଜନମରୁ ପରା ସହୁଅଛି କେତେ
ଦୁଃଖ କଷଣର ଦାଉ ।୦।

ତତଲା ବାଲିରେ ଚାଲିଛି ଅନେକ
ପାଦ ମୋ' ଯାଇଛି ଜଳି
ଆଖିର ଲୁହକୁ ପିଇ ମୁଁ ଯାଇଛି
ଆଞ୍ଜୁଳାରେ ନିଜେ ଭରି
କେବେ ତ କହିନି ବାଟ ମଝିଟାରେ
ଚାଲି ପାରିବିନି ଆଉ ।୧।

କପାଳରେ ମୋର ଲେଖାଅଛି ଯାହା
ତହିଁକୁ ମୋ' ଚିନ୍ତା ନାହିଁ
ସହିଯିବି ସବୁ ଯାତନା ଦହନ
ତବ ଶ୍ରୀମୁଖକୁ ଚାହିଁ
ଭୁଲିବିନି ଦିନେ ସେବିବାକୁ ପଦ
ଏତିକି କରୁଣା ଥାଉ ।।୨।।





## ୪୪

ଅଳୀକଏ ସଂସାରରେ   ସବୁ ଅଳୀକରେ
ଦେଖୁ ଦେଖୁ  ଭାସିଯିବ   କାଳର ସୁଅରେ ।୦।

ଦେଖ କେତେ ବେଗେ ସେ ତ
ଆଗକୁ ଯାଉଚି ଧାଇଁ
ସାଥିରେ ତା' ହଳାହଳ
ବିଷୟ ବାସନା ନେଇ
ଟାଣିନେବ କେତେବେଳେ   ଭଉଁରୀ ଘେରରେ ।୧।

ଜୀବନର  ଅନ୍ତିମରେ
ଓଗାଳିବ ବାଟ ଆସି
ନେବା ପାଇଁ  ଦେବନାହିଁ
ଧନଜନ ସୁଖ ରାଶି
ପାପପୁଣ୍ୟ ଖାଲି ଯାହା   ଯିବେରେ ସାଥିରେ ।୨।

ଦେବନୀତି ପୂଜାପାଠ
ଦାନଧର୍ମ କରିଥିଲେ
ଛଟପଟ ଲାଗିବନି
ଜୀବ ଛାଡ଼ିଯିବା ବେଳେ
ନରକର ଭୟ ଆଉ   ନଥିବ ମନରେ ।।୩।।

■ ■ ■



## ୪୫

ସୁଖଦୁଃଖ କେତେ ପାଇଲୁ ଜୀବନେ
ହିସାବ ତୁ କରୁଥାଉ
ବାଲିଘରେ ଅଛୁ ଜାଣିପାରୁ ନାହୁଁ
ଧୋଇନେବ କାଳ ଢେଉ ।୦।

ବଡ଼ ଦଗାଦିଆ ବଡ଼ ନିରିମମ
ଏଇ ଭବ ମାୟାପୁରୀ
ଅବାଟରେ ନେଇ ଭୁଲାଇ ଶେଷରେ
ରସାତଳେ ଦେବ ଠେଲି
ପାପ ପଙ୍କେ ଥରେ ବୁଡ଼ିଗଲେ ପାଦ
ନପାରିବୁ ଉଠି ଆଉ ।୧।

ଯାତନା ଅନଳେ ଜଳିବାକୁ ହୁଏ
ଏହା ଜୀବନର ରୀତି
ଜଳୁଜଳୁ ନିତି ପ୍ରଭୁ ଚରଣରେ
ରଖ୍ ମନ ଦିନ ରାତି
ନାମ ଯଜ୍ଞେ ଦିଅ ଆହୂତି ନିଜକୁ
ବେଳ ତୋର ଥାଉ ଥାଉ ।।୨।।

■ ■ ■



## ୪୬

ଭବତରୁ ଡ଼ାଳେ ଗଢ଼ିଅଛୁ ନୀଡ଼
କେତେ ତୁ ଯତନ କରି
ମରଣବତାସ ଉଡ଼ାଇ ନେବରେ
ଧରିକି ରଖିବୁ ପାରି ।୦।

ଖୁଣ୍ଟି ଖୁଣ୍ଟି ଖାଉ ଦାନା କେତେ ନିତି
ହରଷରେ ଡ଼େଇଁ ଡ଼େଇଁ
ନୀଳଆକାଶରେ ଡ଼େଣା ମେଲି ଉଡୁ
ଆନନ୍ଦେ ଅଧୀର ହୋଇ
ମାୟା ବ୍ୟାଧ କେବେ ବାନ୍ଧିନେବ ଜାଲେ
ସେ କଥାକୁ ଯାଉ ଭୁଲି ।୧।

ମାନିବୋଲ ବାରେ ଯାଆ ଉଡ଼ି ଥରେ
ଚକା ଡ଼ୋଳିଆର ପାଖ
ମନଥୟ କରି ଦରଶନ କର
କାଳିଆର ପଦ୍ମମୁଖ
କଇବଲ୍ୟ ତାର କରତୁ ଆହାର
ଜୀବନରେ ଯିବୁ ତରି ।।୨।।





## ୪୭

କି ଆନନ୍ଦଧାରା ଖେଳୁଥାଏ ପ୍ରଭୁ
ତୁମ ରୂପ ମାଧୁରୀରେ
ଦରଶନେ ମନ ହୁଏ ଆନନ୍ଦିତ
ଆଖି ଭିଜେ ଲୋତକରେ
କାଳ ବଇଶାଖେ ଝରିଯାଅ ତୁମେ
ହୋଇ ଅମୃତର ବାରି
ଆକୁଳ ପ୍ରାଣର ପିପାସା ମେଣ୍ଟାଅ
ଆଞ୍ଜୁଳାରେ ଜଳ ଭରି
ଅମୀୟ ଆଲୋକ ଢ଼ାଳି ନେଇଯାଅ
ହାତଧରି ଅନ୍ଧକାରେ ।୧।

ପରାଣବୀଣାରେ ତୋଳିଦିଅ କେତେ
ପ୍ରେମମୟ ମଧୁସୁର
ସୁଖଦୁଃଖ ଯେତେ ବାଣ୍ଟିନିଅ ତୁମେ
ହୋଇ ସଖା ସହୋଦର
ସବୁରି ଭିତରେ ରହି ହସୁଥାଅ
ସତ୍ୟଶିବ ସୁନ୍ଦରରେ ।।୨।।





## ୪୮

ଖୁଦ ମୁଠେ ଥିଲା　　　　ବୋଲି ତ ସୁଦାମା
ଆସିଥିଲା ଦିନେ ଚାଲି
ଭାବୁଛି ମୁଁ ସେଇ　　　　ଖୁଦ ମୁଠେ ନାହିଁ
କି ଦେବି ତୁମକୁ ବୋଲି ।୦।

ବାଢ଼ିଦେଇନାହିଁ　　　　ଦିନେ ଫଳମୂଳ
ଜାଳିନାହିଁ ଧୂପଦୀପ
ବୋଳି ଦେଇନାହିଁ　　　　କୋମଳ ତନୁରେ
ଅଗୁରୁ ଚନ୍ଦନ ଲେପ
ତୁମ ନାମେ ହଜି　　　　ଏଇସବୁ କଥା
ମନରୁ ଯାଇଛି ଭୁଲି ।୧।

ନୀଳଚକ୍ର ଚାହିଁ　　　　ନିତି ନୀରବରେ
ଜୀବନ ନଉକା ମୋର
ଭାସି ଯାଉଅଛି　　　　ଛୁଇଁବା ଆଶାରେ
ଭବ ପାରାବାର କୂଳ
କରୁଣା କରିବ　　　　କୂଳେ ଲଗାଇବ
ରଖିବ ଏତିକି ଅଳି ॥୨॥





## ୪୯

ପ୍ରଭୁ ତୁମେ ନିଜେ ହୋଇ
ଏତେ ବଡ଼ କଳାକାର
କାହିଁକି ନିଜକୁ କଲ
ଅଧାଗଢ଼ା ଅଣାକାର ।୦।

କେତେ ରଙ୍ଗେ ଗଢ଼ିଦେଲ
ଏ ଭବ ସଂସାର
ସବୁଥିରେ ଭରିଦେଲ
ସୁଷମା ସମ୍ଭାର
ସାକାରରେ ବିଜେ ହେଲ
ହେଲ ପୁଣି ନିରାକାର ।୧।

ପୂର୍ଣ୍ଣବ୍ରହ୍ମ ନାମବହି
ମାଦଳ ସାଜିଲ
ଜଗତର ନାଥ ହୋଇ
ଜଗତ ମୋହିଲ
ଭବ ପାରାବାରେ ବସି
ମାୟା ଲୀଳା ଲଗାଇଲ ।।୨।।

■ ■ ■



## ୫୦

ପତିତ ତାରଣ ନାମ ବହିଅଛ
କେତେ ସତ କେତେ ମିଛ କହିବକି
ମୁଁ ଜଣେ ପତିତ ଡ଼ାକେ ଅବିରତ
ଡ଼ାକ ମୋର କେବେ ତୁମେ ଶୁଣିଛକି ।୦।

କରିଛି ମିନତି ଚରଣ କମଳେ
ଶୁଭାଶିଷ ବାରି ପାଇଁ
ଢ଼ାଳିଛି ଲୋତକ ନୀରବରେ ନିତି
ଶ୍ରୀମୁଖକୁ ଚାହିଁ ଚାହିଁ
ବେନିଭୁଜ ଟେକି ଶୁଭାଶିଷବାରି
ମୋ' ମଥାରେ କେବେ ଦିନେ ଢ଼ାଳିଛକି ।୧।

ଅନ୍ତର ବେଦୀରେ ବସାଇ ତୁମକୁ
ଭକତିର ଫୁଲ ଦେଇ
କରିଛି ମୁଁ ପୂଜା ଷୋଳ ଉପଚାରେ
ଦିନେ ହେଳା କରିନାହିଁ
ଭାବଗ୍ରାହୀ ହୋଇ ଭାବ ହୃଦୟର
ଥରେ ହେଲେ କେବେ କୁହ ବୁଝିଛକି ।।୨।।

■ ■ ■



## ୫୧

ଦେବକୀର ପ୍ରାଣଧନ    ହେ ବଂଶୀ ବଦନ
କିଣିନେଲ ମନ ମୋର    ହେ ନନ୍ଦ ନନ୍ଦନ ।୦।

ମନ ତଳେ ଫୁଟାଇଲ    ଭକତି କଳିକା
ତୁମ ପ୍ରେମେ ହସାଇଲ    ପରାଣ ବୀଥିକା
ଅନ୍ତରରେ ବିଜେ ହେଲ    ହେ ଜଗବନ୍ଦନ ।୧।

ଝରାଇଲ ତୁମ ପାଇଁ    ଲୁହର ଝରଣା
ଛିଣ୍ଡାଇଲ ମାୟା ଡୋର    ବିଷୟ ବାସନା
ଦେଖାଇଲ ରାହା ମୋତେ ହେ ରାଧାମୋହନ ।।୨।।





# ୫୨

ଭକତି ପ୍ରଦୀପ ଲିଭିଗଲେ ପ୍ରଭୁ
କେମିତି ଆଉ ଜାଳିବି
ଶରଧା କୁସୁମ ଫୁଟି ମଉଳିଲେ
କି ଦେଇ ଆଉ ପୂଜିବି ।୦।

ଆଖି ଲୁହ ମୋର ସରି ତ ଯାଇଛି
ରାତିଦିନ ଢ଼ାଳି ଢ଼ାଳି
ହୃଦୟର ବୀଣା ନିରାଶେ ଥକିଛି
ପାରେନାହିଁ ସୁର ତୋଳି
ମୁହଁ ଖୋଲି ଦିନେ କହିନାହିଁ କିଛି
କେମିତି ଆଜି କହିବି ।୧।

ଭକତମାନଙ୍କ ଜୟଜୟକାରେ
ମୋତେ ଅବା ଗଲ ଭୁଲି
ଭୁଲାଇ ମନରୁ ଭାବିଛକି ମନେ
ଦୂରେ ଦେବ ମୋତେ ଠେଲି
ଠେଲି ଦେଲେ ଦୂରେ ପୁଣି ଆଉ ଥରେ
ପାଦରେ ଯାଇ ପଡ଼ିବି ।।୨।।





## ୫୩

ଭକତିରେ ସୁମରିଲେ ଜଗାଚରଣ
ହୋଇବସେ ତୋର ହୃଦେ ବାସ ଚନ୍ଦନ ।୦।

ଲୁହ ଢ଼ାଳି ଧୋଇଦେଲେ ପାଦକୁ ତା'ର
ସିଏ ଧୋଇଦେବ ସବୁ ପାପକୁ ତୋର
ହରିନେବ ମନୁ ଯେତେ ଦୁଃଖ ଜଷଣ ।୧।

ପିନ୍ଧିଲେ ତା' ନାମେ କରି ଗଳାରେ ମାଳି
ବାନ୍ଧିଦେବ ସିଏ ତା'ର ମମତା ଡ଼ୋରି
ତୋହର ହୋଇବ ପୁଣି ଜୀବଜୀବନ ।୨।

ବନ୍ଦନା କରିଲେ ତାକୁ ଜଳାଇ ଦୀପ
ଜାଳି ଦେବ ସିଏ ତୋ'ର ଜ୍ଞାନ ପ୍ରଦୀପ
ଖୋଲି ଦେବ ନୟନରୁ ମାୟା ବନ୍ଧନ ।।୩।।





## ୫୪

ମିତଣୀ ଆସ, ଯିବା ବୁଲି ନୀଳାଚଳକୁ
ବାରମାସେ ତେର ଯାତରା ଯା' ନାମେ
ଦେଖିବା ସେ ବଡ଼ଦିଅଁକୁ ।୦।

ରତନବେଦୀରେ ବସିଥିବ ଜଗା
ଭାଇଭଉଣୀଙ୍କ ସାଥିରେ
କହିବା ତାହାକୁ ଆମ ମନକଥା
ଜୁହାରି ତାହାର ପୟରେ
ବନ୍ଧୁପଣେ କେହି ସରିନୁହେଁ ତାକୁ
ପାଛୋଟି ନେବ ସେ ଆମକୁ ।୧।

ଦେଖାଇବ ନେଇ ଖୁସିରେ ଆମକୁ
ବଇକୁଣ୍ଠପୁର ତାହାର
ଆନନ୍ଦବଜାରେ ଲାଗିଥିବ କେତେ
ତା' ନାମେ ଗହଳ ଚହଳ
ଭକତ ମେଳରେ ବସିବା ଆନନ୍ଦେ
ଖାଇବା ଅବଢ଼ା ଅନ୍ନକୁ ॥୨॥





## ୫୫

ବାଜରେ ମୃଦଙ୍ଗ ବାଜରେ ଢୋଲକ
ବାଜରେ ଖଞ୍ଜଣି ବାଜ
ରାମନାମେ ହଜି ରାମନାମେ ମଜି
ଆନନ୍ଦ ମଗନେ ବାଜ ।୦।

ସବୁରି ପରାଣେ ଝରାଇ ଦିଅ ହେ
ପରମ ପ୍ରେମର ଧାରା
ସକଳ ନୟନେ ଭରିଦିଅ ପୁଣି
ଭକତିର ଅଶ୍ରୁଧାରା
ଭକତଙ୍କ ସାଥେ ବିଗଳିତ ଚିତ୍ତେ
ଆନନ୍ଦ ମଗନେ ବାଜ ।୧।

ଦୂର ହେଉ ଯେତେ ପାପ ତାପ ସବୁ
ଧରାହେଉ ପୁତୋମୟ
ସବୁଠାରେ ଶୁଭୁ ଖାଲି ରାମ ନାମ
ଭବ ହେଉ ରାମମୟ
କମଳଚରଣ କରିଣ ବନ୍ଦନ
ଆନନ୍ଦ ମଗନେ ବାଜ ।।୨।।





## ୫୬

ଦେଉଳରେ ଦିଅଁ ସାଜି
ପ୍ରଭୁ ତୁମେ ବସିଥାଅ
ଦରଦୀ ଠାକୁର ନାମେ
ଦୁନିଆକୁ ଠକୁଥାଅ ।୦।

ବିପଦେ ଆପଦେ ମୋର
ହୋଇଲନି ଦିନେ ସାହା
କହିବିନି ଦିନେ ଆଉ
ରଖବୋଲି ଚଉବାହା
ମୋ' ଆଖିର ଲୁହ ଦେଖି
ମନେ ଖୁସି ହେଉଥାଅ ।୧।

ଏ ଜଗତ ଅଟେ ମାୟା
ତୁମେ ବି ତ ଅଟ ମାୟା
ଜଗତରନାଥ ନାମେ
ବିସ୍ତାରିଛ ନିଜ କାୟା
ତୁମ ମିଛ ବଡ଼ପଣ
ତୁମ ପାଖେ ରଖିଥାଅ ।।୨।।





## ୫୭

ପାଇଛି ଜୀବନେ ପ୍ରଭୁହେ ତୁମରି
ଅମୃତର ଅନୁଭବ
ଦିବସ ରଜନୀ ହୋଇଛି ମୋହରି
ଭକତିରେ ଅଭିନବ ।୦।

ନିତି ସକାଳରେ ପୂଜାପାଇଁ ଫୁଲ
ତୋଳିବାକୁ ଗଲେ ମୁହିଁ
ଦେଖେ ଫୁଲେଫୁଲେ ଯୋଗୀ ବର ଅଳି
ଗୁଣୁଗୁଣୁ ଗୀତଗାଇ
ଭଜି ଭଜୁଥାଏ ତୁମରି ନାମକୁ
ଭୁଲି ଦୁଃଖ ପରାଭବ ।୧।

ହୃଦୟ ବୀଣାରେ ବାଜିଉଠେ କ୍ଷଣେ
ଭକତିର ମୂର୍ଚ୍ଛନା
ସେଇ ରାଗିଣୀରେ ଚେତନା ମୋ' ହଜେ
ଭୁଲେ ପୂଜା ଅରଚନା
ଚେତନା ଲଭିଲେ ଚକିତ ମୁଁ ହୁଏ
ନୂଆଲାଗେ ତୁମ ରୂପ ।।୨।।





## ୫୮

ମହକି ମହକି ଉଠୁଛି ଦୁଲୁକି
କାଳିଆର ଚଉପାଠ
କିଏ ସେ କରୁଛି ଭଜନ ଜଣାଣ
କିଏ କରେ ପୂଜାପାଠ ।୦।

ରତନବେଦୀରେ ବସିଛି କାଳିଆ
ହୋଇଚି ସୁନ୍ଦର ବେଶ
ଲବଣୀଖିଆ ତା' ନାଲି ଅଧରରୁ
ଝରୁଛି ପୀୟୂଷ ହସ
ଆଖିରେ ଆଖିକୁ ମିଶାଇ କହୁଛି
ସେଇପରା ନନ୍ଦଚାଟ ।୧।

ଭକତେ କୁହନ୍ତି ଶ୍ରୀମୁଖକୁ ଚାହିଁ
ହରିହେ ଉଦ୍ଧାର କର
ତୋ' ବିନା ଜଗତ ଅସାର ଲାଗଇ
ଖୋଲିଦେ ମୁକତି ଦ୍ୱାର
ଲେଉଟି ଯିବାକୁ ହୁଏ ନାହିଁ ମନ
ଛାଡ଼ି ତୋ'ର ବଇକୁଣ୍ଠ ।।୨।।

■ ■ ■



## ୫୯

ଯଦି କେବେ ପ୍ରଭୁ ତବ ଦରଶନେ
ନୟନୁ ଝରିବ ନୀର
ଭାବିବନି କେବେ ଦୁଃଖ ଅଭିମାନେ
ଢ଼ାଳୁଛି ଲୋତକ ଧାର ।୦।

ବାଇଶି ପାହାଚେ ପାଦ ମୁଁ ରଖିଲେ
ଅନୁଭବ ଲାଗେ ଏହି
ସତେ କି ଠାକୁରେ ବସିଛ ଦେଉଳେ
ବାଟ ମୋର ତୁମେ ଚାହିଁ
ଦୀନ ଜନେ ଏତେ ଦୟା ଦେଖି ହୁଏ
ପରାଣ ମୋ' ଥରହର ।୧।

ଅନ୍ତରେ ନୀରବେ ଭାବଡ଼ୋରି ଲାଗେ
ତବ ମୁଖ ଦରଶନେ
ଭାବନା ପୁଲକେ ବିମୋହିତ ହୁଏ
ପ୍ରଭୁ ତୁମ ବଡ଼ପଣେ
ହୃଦୟର ଯେତେ ଭକତିର ଭାଷା
ହୁଏ ମୋ' ନୟନେ ନୀର ॥୨॥





୬୦

ଜଗନ୍ନାଥ ମହାପ୍ରଭୁ ମୋର ତାତମାତ
ପଦ ସେବା କରି ପାଏ ସୁଖ ଅପ୍ରମିତ ।୦।

ବଡ଼ ଦିଅଁ ନାମେ ତା'ର ବଡ଼ ଡାକହାକ
ବଡ଼ ସାନ ସବୁ ତା'ର ଆପଣାର ଲୋକ
ବଡ଼ଦାଣ୍ଡ ବଡ଼ ନେତ ବଡ଼ ତା'ର ଯାତ ।୧।

ମୁରୁକି ମୁରୁକି ହସି ଡ଼ାକେ ମନଜାଣି
ଛଡାଫୁଲ ତୁଳସୀରେ ମନନିଏ କିଣି
ନିଜେ ନଖାଇ ସେ ଦିଏ ତା' ଅବଢ଼ାଭାତ ।୨।

ଫୁଲଠାରୁ ବେଶି ତା'ର କୋମଳ ଅନ୍ତର
ପାରେନାହିଁ ସହି ଦେଖି କଷଣ କାହାର
ବାଣ୍ଟୁଥାଏ କରୁଣାକୁ ଟେକି ଦୁଇହାତ ।।୩।।





## ୬୧

ଚରଣେ ମାଗୁଣି ଆଜି ମୋ' ଏତିକି
ଆହେ ପ୍ରଭୁ ମହାବାହୁ
ଭକତି ଲୋତକ ନୟନରୁ ମୋର
ଅହରହ ଝରୁଥାଉ ।୦।

ନିମିଷ ପାଇଁ ବି ନଆସୁ ମୋ' ମନେ
ବିଷୟା ବାସନା ଭାବ
ଜୀବନେ ମରଣେ ଶୟନେ ସପନେ
ଦେଖିବି ତୁମରି ରୂପ
ଜ୍ଞାନର ପ୍ରଦୀପ ହୃଦୟ ମନ୍ଦିରେ
ଅବିରତ ଜଳୁଥାଉ ।୧।

ଯୋଗୀର ପଥରେ ପଥିକ କରାଅ
ଅନିତ୍ୟ ଏ ଧରାଧାମ
ନିତ୍ୟର ଆଧାର ତୁମରି ନାମକୁ
ଭଜୁଥିବି ଅବିରାମ
ଶରଧା କୁସୁମ ମନତରୁ ଡାଳେ
ତୁମଲାଗି ଫୁଟୁଥାଉ ।।୨।।





୬୨

ହେମା.. ହେମା.. ମଙ୍ଗଳମୟୀ ହେମା
ଆଦ୍ୟାଶକ୍ତି ଭଗବତୀ ସର୍ବବିଘ୍ନ ବିନାଶିନୀ
ନମଇ ତୋ' ପଦ୍ମ ପାଦେ ମା ।୦।

ଶିବପ୍ରିୟା ତ୍ରିନୟନୀ କାତ୍ୟାୟନୀ ମାହେଶ୍ୱରୀ
ପାପତାପ ନିବାରିଣୀ ସନାତନୀ ସୁରେଶ୍ୱରୀ
ଜଗଦ୍ଧାତ୍ରୀ ନାରାୟଣୀ ସାଧୁସନ୍ଥ ସୁପାଳିନୀ
ନମଇ ତୋ' ପଦ୍ମପାଦେ ମା ।୧।

ଯୋଗମାୟା ଯୋଗେଶ୍ୱରୀ ତୁହି କାଳୀ ମହାକାଳୀ
ମହାମାୟା ଭୟଙ୍କରୀ ଭଇରବୀ ଭଦ୍ରାକାଳୀ
ତୁହି ଉମା ଗିରିଜାମା' ସୁଖଶାନ୍ତି ପ୍ରଦାୟିନୀ
ନମଇ ତୋ' ପଦ୍ମପାଦେ ମା ।।୨।।





## ୬୩

କାଠକଣ୍ଢେଇ ତୁ କରି ମୋତେ ଜଗା
ନଚାଇବୁ ନଚା ଯେତେ
ନାଚୁଥିବି ନିତି ପରମ ଆନନ୍ଦେ
ତୋ' ଇଛାରେ ତୋ'ର ହାତେ ।୦।

ମୋର ସୁଖ ଦୁଃଖ ଭଲମନ୍ଦ ସବୁ
ଏଣିକି ଲାଗିଲା ତୋତେ
ମୁଁ ଜଣେ ପତିତ ଦୀନ ଅରକ୍ଷିତ
ଶରଣ ତୋ' ପାଦଗତେ ।୧।

ହସ ଲୁହ ଦେଇ ପରଖିବୁ ଯଦି
ପରଖି ନେଏ ତୁ ମୋତେ
ମୁହଁ ଖୋଲି ଦିନେ କହିବିନି କିଛି
ଜୀଇଁ ଥିବା ପରିଯନ୍ତେ ।୨।

ଏ ମହୀମଣ୍ଡଳେ ତୋ'ଠାରୁ ଦୟାଳୁ
କିଏ ଅଛି ଆଉ ସତେ
ଏତିକି ମୋ' ଅଳି ମୁକତିଦୁଆର
ଖୋଲିଦେବୁ ମୋର ଅନ୍ତେ ।।୩।।





## ୬୪

ବିଶ୍ୱମୟ ତୁମେ ପ୍ରେମର ସ୍ୱରୂପ
ବିରାଜିଛ କେତେ ନାମରେ
ବାନ୍ଧିପାରି ନାହିଁ କେହି ତ ତୁମକୁ
ଗୋଟିଏ ନାମର ଡ଼ୋରିରେ ।୦।

ପୀୟୂଷ ପରଶ ସବୁନାମେ ଅଛି
ସବୁଠି କାୟା ତୁମରି
ମିଳଇ ଆଶିଷ ଯେ ନାମେ ଯେମିତି
ଆକୁଳେ ଦେଲେ ସୁମରି
ତୁମେ ଯେ ପରମ ପ୍ରିୟ ଅନୁପମ
ମହୀୟାନ କରୁଣାରେ ।୧।

ତୁମ ନାମ ସୁର ଜଗାଏ ଭକତି
ପୁଲକ ଭରେ ଅନ୍ତରେ
ସୁରଭିତ ହୁଏ ହୃଦୟ ମନ୍ଦିର
ପରାଣ ଝୁରେ ଅଧୀରେ
ଦରଶନ ଦେଇ ଦିଅ ମହାଭାବ
ନୟନର ଲୁହ ଧାରେ ।।୨।।

■ ■ ■



## ୭୫

ଦେଉଳେ ବସିଛି ଜଗା ବାହୁ ପ୍ରସାରି
ହରିବାକୁ ତ୍ରୟ ତାପ ଆଶିଷେ ତାହାରି
ସେ ଯେ ଦୁଃଖହାରୀ ଶ୍ରୀହରି ମୁରାରି ।୦।

ଚାହେଁ ନାହିଁ ଧୂପଦୀପ ଅଗୁରୁ ଚନ୍ଦନ
ଚାହେଁ ନାହିଁ ଫୁଲଫଳ ପାଟର ପତନ
ଚାହେଁ ଖାଲି ହୃଦୟର ନିଷ୍କାମ ଭକତି
ତା' ନାମରେ ଆକୁଳତା ତା' ପାଦେ ବିନତି
ସେ ଲାଗି ତ ବସିଛି ସେ ଦୁଆର ତା' ଖୋଲି
ସେ ଯେ ଦୁଃଖହାରୀ ଶ୍ରୀହରି ମୁରାରି ।୧।

ଭକତର ପ୍ରାଣଧନ ନନ୍ଦର ନନ୍ଦନ
ଭାବ ବିନୋଦିଆ ସେ ତ ଆରତ ଭଞ୍ଜନ
ଶରଧାରେ ଯାଇ ପାଶେ କରିଲେ ଗୁହାରି
କରୁଣାରେ ଭରିଦିଏ ସବୁରି ଅଞ୍ଜଳି
ପାରିକରେ ଭବସିନ୍ଧୁ ହୋଇ ସେ ନାଉରି
ସେ ଯେ ଦୁଃଖହାରୀ ଶ୍ରୀହରି ମୁରାରି ।।୨।।





## ୬୬

ମରାଳ ବାହିନୀ କମଳ ଲୋଚନୀ
ବନ୍ଦେ ଦେବୀ ସରସ୍ୱତୀ
ସର୍ବ ଶୁଭଙ୍କରୀ ଜ୍ଞାନ ପ୍ରଦାୟିନୀ
ନମୋ ନମୋ ମା ଭାରତୀ ।୦।

କଜ୍ଜ୍ୱଳ ଶୋଭିତ ନୟନ ଯୁଗଳ
ଜ୍ୟୋତିର ପ୍ରକାଶେ ବିଭୋର ସୁନ୍ଦର
ଶ୍ୱେତପଦ୍ମାସୀନା ସର୍ବାଙ୍ଗ ଶୋଭିତା
ବୀଣାପାଣି ଭଗବତୀ ।୧।

ତୋର ସୁଦୟାରେ ଅଜ୍ଞାନୀ ପଣ୍ଡିତ
ତୋ' ଆଶିଷେ ହୁଏ ମନ ଆଲୋକିତ
ଜଗତ କଲ୍ୟାଣୀ ବ୍ରହ୍ମସନାତନୀ
ତବ ପାଦେ ରହୁ ମତି ।।୨।।





## ୬୭

ଆଲୋକ ଦେଖାଅ ଆଲୋକମୟ ହେ
ଗହଳ ଅନ୍ଧାରେ ହଜିଛି ମୁହିଁ
ଖୋଜିଖୋଜି ପଥ ପାଏ ନାହିଁ ପ୍ରଭୁ
ଦେଖି ବି ନପାରେ ତୁମକୁ କାହିଁ ।୦।

ମାୟା ଭରା ଏଇ ଜୀବନପଥରେ
ପଥଭୁଲି ଆଜି ହଜିଛି ତିମିରେ
ଥାପି ଦେଇ ପାଦ ହୃଦୟ ମନ୍ଦିରେ
ବିକଶିତ ହୁଅ ମୋହରି ଅନ୍ତରେ
ଦୂର ହେଉ ଯେତେ ମାୟାର କୁହେଳି
ଦେଖିବି ତୁମକୁ ସବୁରେ ଚାହିଁ ।୧।

କରି ତୁମ ନାମ ଜୀବନର ବ୍ରତ
ହୋଇବି ତୁମର ଚିର ଅନୁଗତ
ସେବିବି ନିରତେ କମଳ ପୟର
ଦିଅ ଭକ୍ତି ପ୍ରଭୁ କରୁଣା ସାଗର
ଯାଉ ଏ ଜୀବନ ଯାଉ ଏ ପରାଣ
ଭକତି ପଥର ପଥିକ ହୋଇ ॥୨॥





## ୬୮

ମୋ' ମନର ଡ଼ୋରି ଜଗା
ତୋ' ହାତରେ ଦେଇଦେଲି
ତୋ' ନାମକୁ ଜୀବନର
ଜପାମାଳି କରିନେଲି ।୦।

ବୁଝେ ନାହିଁ ଭଲମନ୍ଦ ଜାଣେନାହିଁ ଚଲାପଥ
ଯେଉଁ ପଥେ ନେବୁ ତୁହି ଯିବି ଧରି ତୋ'ର ହାତ
ସୁଖ ଦୁଃଖ ସବୁ ମୋର
ତୋ' ଚରଣେ ଅରପିଲି ।୧।

ନିରେଖି ତୋ' ଚକାଆଖି ସେବୁଥିବି ପଦ୍ମପାଦ
ହୃଦୟରେ ଶୁଭୁଥିବ ମୋହନ ମୁରଲୀ ନାଦ
ଝରିପଡୁଥିବ ଶିରେ
ଶୁଭଆଶିଷର ବାରି ।।୨।।





## ୬୯

ସୁନାଫୁଲେ ରୁପାଫୁଲେ ଚମ୍ପାଫୁଲେ ମଲ୍ଲୀଫୁଲେ
କେଉଁ ଫୁଲେ ନାହିଁ ବାସ
ଅଛି ସେଇ ପଦ୍ମଫୁଲେ ଅଛି ଯାହା ନୀଳାଚଳେ
ଜଗତଯାକର ବାସ ।୦।

ସେ ଫୁଲର ମିଠାହସ ମଳୟରେ ଝୁଲି ଝୁଲି
ସତେଅବା କହୁଥାଏ ମାୟା ମୋହ ସବୁ ଭୁଲି
ଆସ ପୁଣ୍ୟ ନୀଳାଚଳ ଚାହିଁଛି ମୁଁ ବାଟ ତୋ'ର
ଆସ ମନ ଥରେ ଆସ ।୧।

ଭକତ ନିମନ୍ତେ ଥାଏ ସେ ଫୁଲରେ କୃପାମଧୁ
ଭକତର ମନଜାଣି ଝରିପଡ଼େ ବିନ୍ଦୁ ବିନ୍ଦୁ
ତ୍ରିଭୁବନେ କେହି ନାହିଁ ଯିଏ ଝୁରୁନାହିଁ ସେଇ
କରୁଣାର ମଧୁରସ ।।୨।।

■ ■ ■



## ୭୦

କରୁଣା ପସରା ନେଇ କଳାମାଣିକ
ବେପାର କରୁଚି ବସି ସାଜି ବଣିକ ।୦।

କେତେ ଅଜବ ତାହାର ବେପାର ସବେ
ଯିଏ ମାଗେ ଦିଏ ତାକୁ ତା' ଦୁଇ ହାତେ
ଆଖିରେ ଆଖି ମିଶାଇ କରେ କୁହୁକ ।୧।

ଯେତେଥର ମାଗୁଥିଲେ କରେନି ମନା
ପସରାକୁ କରୁଣା ତା' ସରେନି ଜମା
ବୁଝାଇ କହେ ସେ ଅଟେ ସୁଖ ଅଳୀକ ।୨।

ବଦଳରେ ନିଏ ନାହିଁ କାହାଠୁ ମୂଲ
ଓଲଟି ସେ ହସୁଥାଏ ଅମୃତ ତୁଲ
ଦେଖାଏ ଫେରନ୍ତା ବାଟ ଢାଳି ଆଲୋକ ।।୩।।





## ୭୧

ବନ୍ଧୁ ମହାନ୍ତିର ବନ୍ଧୁହୋଇ ଜଗା
ହେଲୁ କିଆଁ ଦଗାଦିଆ
ଦୟା ମାୟା ତୋ'ର ଶରଧା କି ସବୁ
ଖାଲି ମିଛ ଦେଖାଣିଆ ।୦।

ଖାଇଥିଲୁ ଦିନେ ଶବରୀ ଅଇଁଠା
ବିଦୁରର ଶାଗଭାତ
ବିଶ୍ୱାବସୁ ପୂଜା ଘେନାକରି ହେଲୁ
କଳିକାଳେ ଜଗନ୍ନାଥ
ହୁଏନି ପରତେ ଅଟୁ ବୋଲି ସେଇ
ସୁଦାମାର ଖୁଦ ଖିଆ ।୧।

ଭକତ ନିଜର ଭକତି ଭାବରେ
ଲେଖିଛନ୍ତି ସ୍ତୁତିଗାଥା
ବଖାଣି ଅଛନ୍ତି ଅହଲ୍ୟା ଦ୍ରୌପଦୀ
ଗଜ ମୃଗୁଣୀର କଥା
ମହିମା ଯଶରେ ମହାୟାନ କଲେ
ନାମ ଦେଲେ ଚଉବାହା ।।୨।।





୭୨

ଜଗତଠାକୁର ଜଗନ୍ନାଥ ତୁମେ
କେତେ ତୁମ ଅବତାର
ତୁମେ ଆଲ୍ଲା ଯୀଶୁ ଶଙ୍କର ନାନକ
ତୁମେ ବୁଦ୍ଧ ମହାବୀର ।୦।

ଜଗତରେ ସିନା ହୁଏ ମୁଖରିତ
ଅନେକ ତୁମର ନାମ
ଅନେକ ନାମର ଭିତରେ ତୁମେ ତ
ସେଇ ଏକା ଭଗବାନ
ଶ୍ରୀମନ୍ଦିର ଗୀର୍ଜା ମସ୍‌ଜିଦ ତୁମ
ଲୀଳାଖେଳା ଦରବାର ।୧।

ଲୀଳାମୟ ତୁମେ ତୁମରି ଲୀଳାରେ
ତୁମେ ଅଟ ମହୀୟାନ
ତୁମକୁ ଲଭିବା ପାଇଁ ମନେ ଖାଲି
ଭକତିର ପ୍ରୟୋଜନ
ଭକତ ତୁମେ କରୁଣା ବିତରି
କରିନିଅ ଆପଣାର ।।୨।।





## ୭୩

କାଳିଆ ତୁ କହ ମୋତେ ଦେବୁନି ଦୂରେଇ
ତୋ' ବିନା କି ପ୍ରାଣଧରି ପାରିବି ମୁଁ ରହି ।୦।

ମୁଁ ହସିଲେ ତୁ ହସିଛୁ ମୁଁ କାନ୍ଦିଲେ ତୁ କାନ୍ଦିଛୁ
ମୋ' ସୁଖରେ ମୋ' ଦୁଃଖରେ ମୋ' ପାଖରେ ତୁ ରହିଛୁ
ହାତଧରି ଚଲାଇଛୁ ବାଟକୁ କଢ଼େଇ ।୧।

ତୋ' ବିନାରେ କଳାଜହ୍ନ ଆଷାଢ଼ ଶ୍ରାବଣ ପରି
ଲୁହ ଜଳେ ବୁଡ଼ିଯିବି ତୋତେ ନିତି ଝୁରି ଝୁରି
କେହି ନାହିଁ ସାହା ମୋର ନେବ ଯେ କୋଳେଇ ।।୨।।





## ୭୪

କହ କଳା କାହ୍ନୁ କେହି
କହିଲାକି କିଛି ତୋତେ
ମନମାରି ବସିଛୁ ତୁ
ଭଲ ଲାଗେ ନାହିଁ ମୋତେ ।୦।

ଗୀତଗାଇ ଝୁଲାଇବି
ପକ୍ଷୀରାଜେ ବୁଲାଇବି
ସରଗର ଜହ୍ନତାରା
ପାରିଜାତ ଆଣିଦେବି
ମନଖୋଲି କହ କାହ୍ନୁ
ଅଭିମାନ କିଆଁ ଏତେ ।୧।

କହିଲେ ତୁ ନେଇଯିବି
ସେଇ ତୋର ଗୋପପୁରେ
ହସିଖେଳି ନାଚିଯିବୁ
ବାଳସଖା ଗହଣରେ
ଯଶୋଦା ମାଆର ହାତୁ
ଖାଇବୁ ଲବଣୀ କେତେ ।।୨।।

■ ■ ■





## ୭୫

ଅଭୟ ଛାୟା ଦିଅ ମହାପ୍ରଭୁ
ଦିଅ ଶ୍ରୀଚରଣ ସାହାରା
କର ଅଙ୍ଗୀକାର ଧୂପଦୀପ ଅର୍ଘ୍ୟ
ହେଲା ଆଖି ଲୁହ ଅସରା ।୦।

ଦେଇଛି ପରାଣ ତୁମ ଚରଣରେ
ବିତିଛି ଜୀବନ ତୁମ ଧିଆନରେ
ଲଳିତ କୋମଳ ରୂପ ଦରଶନେ
ହୋଇଛି ମୋ' ଦୁଃଖପାଶୋରା ।୧।

ଭକତି ଜୁଆର ମନ ସାଗରରେ
ଉଠିଛି ଲଭିବ କମଳ ପୟରେ
ଜାଣିଛି ପାଷାଣ ହେବନାହିଁ କେବେ
ତୁମେ କରୁଣାର ପସରା ।।୨।।

■ ■ ■



# ୭୬

କେହି କିଛି କୁହନାହିଁ
କାଳିଆ ଚାନ୍ଦକୁ
ବାନ୍ଧିଯିବ ପରା ତା'ର
ଯଶୋଦା ମାଆକୁ ।୦।

ଏକୋଇରବଳା ସିଏ
ନନ୍ଦର କୁମର ଆହା
ରୁଷି ଗଲେ ଗୋପପୁରେ
ଘୋଟିବ ଦୁଃଖର ଛାୟା
କିଏ ଯାଇ ବୁଝାଇବ
ସଭିଙ୍କ ମନକୁ ।୧।

ହସି ଖେଳି ଝୁଲିଝୁଲି
ବଇଁଶୀ ବଜାଇ ଧୀରେ
ଯିବନାହିଁ ଧେନୁ ନେଇ
ଯମୁନା ନଦୀର ତୀରେ
ରାଧାରାଣୀ ଝୁରିହେବ
ଚାହିଁ ତା' ବାଟକୁ ॥୨॥

■ ■ ■



## ୭୭

ପ୍ରଭୁ କରିଅଛ ଯେତେ ସରଜନା
କଂପନ ତୋଳେ ସବୁ କଳପନା ।୦।

ସୂରୁଯ ହସଇ ପୂରୁବ ଦିଗରେ
ଢ଼ାଳି କିରଣର ଆଭା
ହସଇ ଗଗନେ ଜୋଛନା ତାରକା
ଆହା କେତେ ମନଲୋଭା
ଶ୍ୟାମଳିମା ଧରା ଆନନ୍ଦ ମଗନେ
କରେ ତୁମ ଆରାଧନା ।୧।

ତୁମରି ସୃଷ୍ଟିରେ ଜୀବନବନ୍ଧନ
ମମତାର ଯେତେ ଡ଼ୋର
ସଭିଏଁ ତ ବନ୍ଧା ଏକରେ ଆରେକ
ସେନେହର ମଧୁଝର
ମଧୁମୟ ଏଇ ଭୁବନେ ଶୁଭଇ
ତୁମ ନାମ ମୂରୁଛନା ।।୨।।





## ୭୮

ଜଣାଣ ଗୀତିକା ଲେଖିଲି ଅନେକ
ମନ ମୋ' ବୁଝିଲା ନାହିଁ
ଭକତି ପ୍ରଦୀପ ରଖିଲି ସଜାଡ଼ି
କାହିଁକି ଜଳିଲା ନାହିଁ ।୦।

ଜୀବନର ଯେତେ ସୁଖସପନକୁ
ବିଭୁପାଦେ ଅଜାଡ଼ିଲି
ଯୋଗୀପରି ଦିନ ଧ୍ୟାନଧାରଣାରେ
ସାଧନାରେ ବିତାଇଲି
ତଥାପି କେମିତି ହୃଦୟ ମନ୍ଦିରେ
ପ୍ରଭୁତ ଆସିଲେ ନାହିଁ ।୧।

ଆଶା ଅଛି ମନେ ଆସିବେ ଠାକୁରେ
ଦେଖାଦେବେ ପ୍ରେମମୟ
ନିରେଖିବି ସେଇ ପ୍ରେମମୟ ରୂପ
ମନହେବ ମଧୁମୟ
ଆଶା କିବା ମୋର ଆଶାରେ ରହିବ
କେବେବି ପୂରିବ ନାହିଁ ।।୨।।

■ ■ ■



## ୭୯

ମୋହନ ମୂରଲୀ ଯଦି
ହୋଇଥାନ୍ତି ମୁହିଁ
ରଙ୍ଗାଅଧରକୁ ନିତି
ଯାଉଥାନ୍ତି ଛୁଇଁ ।୦।

ରହିଥାନ୍ତି ଆଦରରେ
ପ୍ରଭୁଙ୍କ ହାତରେ
ରାଧା ରାଧା କହି ଧୀରେ
ବାଜନ୍ତି ଅଧୀରେ
ପ୍ରେମ ପାଗଳିନୀ ରାଇ
ଆସିଥାନ୍ତେ ଧାଇଁ ।୧।

ପ୍ରେମମୟ ରାଧାକୃଷ୍ଣ
ଯୁଗଳ ମୂରତି
ଦରଶନକରି ପାଦେ
ଢ଼ାଳନ୍ତି ପ୍ରଣତି
କୋଟି କୋଟି ପୁଣ୍ୟଫଳ
ଯାଇଥାନ୍ତି ପାଇ ।।୨।।





## ୮୦

ଯାହାର ଅନ୍ତରେ ଥାଏ ଭକତି ଯେତେ
ତାହାର ଅଟନ୍ତି ପ୍ରଭୁ ଆପଣା ସେତେ ।୦।

ଶ୍ରୀଅଙ୍ଗ ସେବିତ ଛଡ଼ା ଫୁଲର ବାସ
ହରି ଅଛି ଯାହାମନୁ କାମନା ବିଷ
ଭବହୁଏ ବିଭୁମୟ ତା' ଲାଗି କେତେ ।୧।

ଚକାନୟନେ ହଜିଛି ଯାହାର ମନ
ଲୋଡ଼ା କିବା ତା'ର ଆଉ ଧନକି ମାନ
ସଦାଦେଖେ ଦେବତାଙ୍କୁ ସିଏ ତା' ଚିତ୍ତେ ।୨।

ଶ୍ରୀମୁଖକୁ ଚାହିଁ ଯିଏ ଲଭିଛି ସୁଖ
ତା'ପାଇଁ ସମାନ ସବୁ ସୁଖ କି ଦୁଃଖ
ଦିବାନିଶି ପ୍ରଭୁନାମ ହୃଦେ ସେ ଚିନ୍ତେ ।।୩।।





## ୮୧

ଶ୍ୟାମ ମାଗୋ ତୁହି ସତୀ
ପତି ସୋହାଗିନୀ
ମଙ୍ଗଳକର ମୋ ମାତ
ଗିରିଜାନନ୍ଦିନୀ ।୦।

ଅନଳରୁ ଜାତହେଲୁ ଦନୁଜତୁ ବିନାଶିଲୁ
ପାପତାପ କଲୁଷରୁ ଧରଣୀକୁ ଉଦ୍ଧାରିଲୁ
ପାଳିଲୁ ଆନନ୍ଦେ ମହି
ଜଗତ କଲ୍ୟାଣୀ ।୧।

କେତେନାମେ କେତେରୂପେ ତୁହି ମାତ ବିରାଜିଲୁ
ଜଗତର ମାନ ମୋହି ଶୁଭାଶିଷ ଢାଳିଦେଲୁ
ସୁଖଦେଲୁ ଶାନ୍ତିଦେଲୁ
ଆନନ୍ଦଦାୟିନୀ ।।୨।।





୮୨

ଏ ଜୀବନ ଏକ ସୁଖ ଦୁଃଖଭରା
ହସ ଆଉ ଲୁହର ନଈ
ଗୋଟିଏ କୂଳରେ ନବରବି ରାଗ
ଆର କୂଳେ ଗୋଧୂଳି ଛାଇ ।୦।

ସେ ନଈ ପଠାରେ ଲୋଭ ମାୟା ମୋହ
କାମନାର ଫୁଲ ବାସେ
ଆଶାନିରାଶାର ଦୋଳିରେ ସେ ଝୁଲି
ଆଖିଠାରି ନିତି ହସେ
ସେ ହସରେ ଭୁଲି ଭୁଲିଯାଉ କିଆଁ
ପ୍ରଭୁନାମ ସ୍ମରିବା ପାଇଁ ।୧।

ମୋର ମୋର ଯେତେ ମିଛ ଅହମିକା
କେତେବେଳେ ହଜିଯିବ
ନାଦବ୍ରହ୍ମ ସେଇ ସତ୍ୟ ରାମନାମ
ଶେଷବେଳେ ସାଥେ ଯିବ
ମାଟିର ଦେହକୁ ମିଶାଇ ମାଟିରେ
ଜଳିଯିବ ମଶାଣି ଜୁଇ ।।୨।।





## ୮୩

ନମୋ ନାରାୟଣୀ ନମୋ ତୁ ଶିବାନୀ
କର ପରିତ୍ରାଣ ମା ସିଂହବାହିନୀ ।୦।

ଅନଳ ସମ୍ଭୂତା ସତୀ ପତିବ୍ରତା
ଜଗତ ଈଶ୍ୱରୀ ଗିରିରାଜ ସୁତା
ନମୋ କାତ୍ୟାୟନୀ ନମୋ ତୁ ରୁଦ୍ରାଣୀ
ତମୋ ନାଶ ମାଗୋ ମହିଷମର୍ଦ୍ଦିନୀ ।୧।

ସତ୍ତ୍ୱ, ରଜ, ତମ, ତ୍ରିଗୁଣ ଧାରିଣୀ
ଦନୁଜ ଦଳିନୀ ଦେବୀ ନାରାୟଣୀ
ନମୋ ତ୍ରିଲୋଚନୀ ନମୋ ତୁ ଭବାନୀ
ହର ପାପ ତାପ ଜଗତ ଜନନୀ ।୨।

ବିଦ୍ୟା ବୁଦ୍ଧି ମାତ କରଗୋ ପ୍ରଦାନ
ଦିଅ ଶୁଭାଶିଷ କରଗୋ କଲ୍ୟାଣ
ନମୋ ସୁହାସିନୀ ନମୋ ତୁ କଲ୍ୟାଣୀ
ମଙ୍ଗଳ କର ହେ ଦୁର୍ଗତି ନାଶିନୀ ।।୩।।





୮୪

ବଡ଼ଦିଅଁ ଭାବି ଦେଉଳରୁ ତୋ'ର
ଦିନେ ଫେରି ଯାଉଥିଲି
ମରମକୁ ଛୁଇଁ ଡ଼ାକିଲୁ ତୁ ହସି
ଆ ଫେରିଆ ପୁଣି ଚାଲି ।୦।

ଭକତି କ'ଣ ମୁଁ ଜାଣିତ ନଥିଲି
ତାହା ମୋତେ ଶିଖାଇଲୁ
ଭଜନ ଜଣାଣ ଗାଇ ତ ନଥିଲି
କଣ୍ଠେ ମୋର ସୁରଦେଲୁ
ତୁ ବୁଝିଲୁ ମୋତେ ମୁଁ ବୁଝିଲି ତୋତେ
ନାମ ତୋର ଗାଇଗଲି ।୧।

କେବେ ମୁଁ ନିରେଖ ନହେବି ବୋଲି ତୁ
ଢ଼ାଳିଦେଲୁ କୃପାବିନ୍ଦୁ
ଝରିଗଲା ତାହା ହୃଦୟ କନ୍ଦରେ
ହୋଇ ଶତ ମହାସିନ୍ଧୁ
ମୋ' ପିଆସୀମନ ଝୁରିଲା ତୋ' ରୂପ
ଝୁରିଲା ତୋ' ଦାଣ୍ଡଧୂଳି ॥୨॥





## ୮୫

ସୁପ୍ରଭାତ ହେଲା ହସିଲାଣିଧରା
ନବଉଷା ଆଲୋକରେ
ଶରଦ ଆକାଶ ଉଲ୍ଲାସରେ ଭରା
ଶାରଦୀୟ ସଂଗୀତରେ ।୦।

ନରନାରୀ ଯେତେ ଫୁଲ ଧୂପଦୀପ
ଭୋଗରାଗ ହାତେ ନେଇ
ଗମିଲେଣି ଧୀରେ ଜନନୀର ପାଶେ
ପୂଜା ଅରଚନା ପାଇଁ
ରହିରହି ବାଜେ ଘଣ୍ଟ ଘଣ୍ଟା ଖୋଳ
ଆହା କେତେ ସୁମଧୁରେ ।୧।

ଆସ ମନ ଯିବା କରୁଣାମୟୀଙ୍କୁ
କରି ବାରେ ଦରଶନ
ଜୁହାରିବା ସେଇ ପାବନ ଚରଣେ
ଅରପିବା ମନପ୍ରାଣ
ଅଭୟ ଦାୟିନୀ ଦେବେ ବରାଭୟ
ଡାକିଦେଇ ପଣତରେ ।।୨।।





[ ୬

ଦେବତା ହେ ତୁମେ କରୁଣାସିନ୍ଧୁରୁ
ଦେଲ ଯେଉଁ ଟୋପେ ଢ଼ାଳି
ଧୋଇ ଦେଲା ତାହା ପାପତାପ ଯେତେ
ଜୀବନେ ଯା କରିଥିଲି ।୦।

ସକାଳ ଶିଶିରେ ନିରାଶାର ଦୁଃଖ
ମୋତେ ଆଉ ଛୁଏଁନାହିଁ
ସୁନେଲି ସୂରୁଯ ମୋ' ମନେ ମୁରୁଜ
ବୁଣେ ତୁମ ନମ ଗାଇ
ଭକତି ଜୁଆର ହୃଦୟ ମରୁରେ
ବହିଯାଏ ସୁର ତୋଳି ।୧।

ଆନନ୍ଦରେ ଅଶ୍ରୁ ଝରିଯାଏ ଆଜି
ନୟନରୁ ଧାର ଧାର
ମନୋରଥପୂର୍ଣ୍ଣ କରିଲ ହେ ପ୍ରଭୁ
ଦୀନହୀନ ସେବକର
ଛଡ଼ା ତୁଳସୀକୁ ତୁଣ୍ଡେ ଦେଇ ମୋର
ସବୁ ସୁଖ ପାଇଗଲି ।।୨।।

■ ■ ■



୮୭

ଯଶଦିଅ ମାନଦିଅ
ସୁଖ ସଉଭାଗ୍ୟ ଦିଅ
ଯାହା ଦିଅ ବା ନଦିଅ
ତୁମ ପାଦେ ଭକ୍ତି ଦିଅ ।୦।

ଆସୁଥାଅ ଧରାଧାମେ
ଯୁଗେ ଯୁଗେ ଅବତରି
ମାୟାମୋହ ଅନ୍ଧକାର
ଦିଅ ସବୁ ଅପସାରି
ହୃଦୟରେ ଜ୍ଞାନଦୀପ
ମାଗୋ ତୁମେ ଜାଳିଦିଅ ।୧।

ପାପ ତାପ ଦୂରକର
ତବ ଦିବ୍ୟ ମହିମାରେ
ଆଲୋକିତ କର ଭବ
ତବ ଦିବ୍ୟ ଆଲୋକରେ
ମହାମାୟା ଶୁଭଙ୍କରୀ
ଶୁଭାଶିଷ ଢାଳିଦିଅ ।।୨।।

■ ■ ■



## ୮୮

କାଳିଆ ରଙ୍ଗରେ   ରଙ୍ଗାଇ ଦେ ମନ
ତା' ହାତେ ଟେକିଦେ   ଜୀବନ ପରାଣ ।୦।

ନାଥ ହେବ ତୋ'ର   ସେ ଜଗତନାଥ
ତୋ' ଶିରେ ରଖିବ   ତା'ର ଦୁଇହାତ
କରିବ ଯେତେ ତୋ'   କଲୁଷ ଖଣ୍ଡନ ।୧।

ଚିନ୍ତାମଣି ପାଦେ   ରଖି ତୋ'ର ମତି
ଚିନ୍ତ ତା'ର ରୂପ   ନାମ ତା'ର ନିତି
କରତୁ ତାହାକୁ   ତୋ' ହୃଦଚନ୍ଦନ ।୨।

ଆରପୁରେ ଯିବୁ   ଯେତେବେଳେ ତୁହି
ଶୁଭାଶୀଷ ଦେଇ   ହସିବସେ ଚାହିଁ
ତୁଟାଇବ ତୋ'ର   ଜନ୍ମର ବନ୍ଧନ ।।୩।।

■ ■ ■



## ୮୯

ପ୍ରଣତି ଘେନଗୋ ମହିଷମର୍ଦ୍ଦିନୀ
ଶିବପ୍ରିୟା ଶିବଜାୟା
ଏ ଧରାଧାମକୁ କର ପୂତୋମୟ
ଦୂରକରି ମୋହମାୟା ।୦।

ଅପାର ମହିମା ଜନନୀ ତୁମର
ତୁମେ ବିଘ୍ନ ବିନାଶିନୀ
ପତିତପାବନୀ ଦୁଃଖ ନିବାରିଣୀ
ଜ୍ଞାନ ଭକ୍ତି ପ୍ରଦାୟିନୀ
ଜଗତ ହିତରେ ଶାନ୍ତି ସ୍ୱରୂପିଣୀ
ଯୋଗେଶ୍ୱରୀ ଯୋଗମାୟା ।୧।

ଦଶଭୁଜା ତବ ଶୋଭାପାଉଥାଏ
ଦିବ୍ୟ ଆୟୁଧରେ ମାତ
ପାପତାପ ନାଶି ଆଶିଷ ପ୍ରଦାନେ
ପୂର୍ଣ୍ଣକର ମନୋରଥ
ଏ ଧରଣୀ ହୁଏ ସୁଖଶାନ୍ତି ଭରା
ମମତାର ପୁଣ୍ୟତୋୟା ।।୨।।

■ ■ ■



୯୦

ମୂଢ଼ମନ, ହେଲୁ ତୁକି ସତେବାଇ
ପ୍ରଭୁଙ୍କୁ ଖୋଜୁଛୁ ବିଷୟାବାସନା
କାମନାରେ ବୁଡ଼ିରହି ।୦।

ଲୋଭ ମାୟାମୋହ
କରି ପରିହାର
ଶୁଦ୍ଧପୂତ ଚିତ୍ତେ
ହୃଦୟେ ତୋହର
କରିଲେ ପୂଜାତୁ ପାଇବୁ ସିନାରେ
ତାଙ୍କର କରୁଣା ଛାଇ ।୧।

ଅଣ ଅକ୍ଷରରେ
ନାମ ତାଙ୍କ ଜପି
ତାଙ୍କ ପାଦ ତଳେ
ନିଜକୁ ଅରପି
ଘେନିଲେ ଶରଣ କରିବେ ତାରଣ
ମୁକତି ଲଭିଭୁ ଯାଇ ।।୨।।





## ୯୧

ବାଜିଉଠ ଶୁଭଶଙ୍ଖ
ବାଜହେ ମଙ୍ଗଳବାଦ୍ୟ
ଜନନୀଙ୍କ ଆବାହନେ
ଚଉଦିଗେ ଖେଳିଯାଉ
ପବିତ୍ର ଆନନ୍ଦ ଢେଉ
ମାଆଙ୍କର ଆଗମନେ ।୦।

ଦିବ୍ୟ ଆଭୂଷଣ ବସନରେ ମାତ
ଦିଶୁଛନ୍ତି କେଡେ ତୋରା
ମୁଖମଣ୍ଡଳରୁ ଝରିପଡୁଛି କି
ଶତ ସୁଷମାର ଧାରା
କୋଟି କୋଟି ପୁଣ୍ୟ ଫଳ
ମିଳିଥାଏ ସେହି ରୂପ
ଶୋଭାଶିରୀ ଦରଶନେ ।୧।

ସକଳତୀର୍ଥ ସେ ପାବନ ଚରଣେ
ଜୁହାରିବା ଭକତିରେ
ତ୍ରୟତାପନାଶି ଉଦ୍ଧାରିବେ ମାତ
କରୁଣାର ବାରିଧାରେ
ଧନ୍ୟହେବ ଏ ଜୀବନ
ଏଇ ଦେହ ମନପ୍ରାଣ
ମାଆ ନାମ ସୁମରଣେ ॥୨॥

■ ■ ■



## ୯୨

ଦୁଇଦିନପାଇଁ ମନ  ଦୁଇଦିନପାଇଁ
ଆସିଅଛୁ ପରା ଏହି  ଭବ ସଂସାରକୁ ବୁଲି
ଭୁଲିଯାଉ କାହିଁ ପାଇଁ ।୦।

ଯାହା ଦେଖୁ ଆଖି ଖୋଲି  ସବୁ ତ ତାଙ୍କର
କେଉଁ ଅଧିକାରେ ଭାବୁ  ସେ ସବୁ ତୋହର
ତାଙ୍କ ଦରବକୁ ନେଇ  ଅହଙ୍କାର କରୁ କାହିଁ
ମୋର ମୋର ବୋଲି କହି ।୧।

ସୁଖ ଟିକେ ପାଇବାକୁ  ହେଉ ତୁ ଚାତର
ଦୁଃଖ ପାଇ ହେଉ ପୁଣି  କେତେ ତୁ କାତର
ମାୟା ବିଷପିଇ କହୁ  ଦୁଃଖଦିଅ କିଆଁ ପ୍ରଭୁ
ଉଦ୍ଧାର ହେ ଭାବଗ୍ରାହୀ ।୨।

ଏ ଦୁନିଆ ତାଙ୍କଘର  ନାଥ ସେ ବିଶ୍ୱର
ତାଙ୍କ ଘରେ କୁଣିଆ ତୁ  ନିମିତ୍ତ ମାତର
ମନ ତାଙ୍କ ପାଦେ ଦେଇ  ମେଲାଣି ତୁ ମାଗ ଯାଇ
ସୁଖେ ନାମ ରସପିଇ ।।୩।।





## ୯୩

ଆହା କି ସୁନ୍ଦର ଧରଣୀ ହସିଲା
ବିଜେ ହେଲେ ଜଗନ୍ମାତ
ଆନନ୍ଦ ମନରେ ପୂଜିବା ମାଆଙ୍କୁ
ଭକତିରେ ଯୋଡ଼ି ହାତ ।୦।

ଶୁଦ୍ଧପୂତ ଚିତ୍ତେ ପୂଜାମନ୍ତ୍ର ପାଠେ
କରି ତାଙ୍କ ଆବାହନ
ଝୁଣା ଧୂପଦୀପ ଫୁଲ ଭୋଗରାଗ
କରିବାରେ ସମର୍ପଣ
ସୁମରଣା କରି ଜଣାଇବା ପଦେ
କୋଟି କୋଟି ଦଣ୍ଡବତ ।୧।

ଜନନୀ ଆମର ସଂକଟ ହାରିଣୀ
ସର୍ବ ଦୁଃଖ ନିବାରିବେ
ବିପଦୁ ଉଦ୍ଧାରି କଲୁଷ ନାଶିବେ
ସର୍ବ ବିଘ୍ନ ବିନାଶିବେ
ଧନଧାନ୍ୟ ଦେଇ ଶୁଭାଶିଷ ଦେବେ
ସ୍ନେହମୟୀ ଆଦିମାତ ।।୨।।





## ୯୪

ଜଗତମୋହିନୀ ମା' ସିଂହବାହିନୀ
ଜୟ ତୁ କରୁଣାମୟୀ
ଚରଣେ ଶରଣ ଦିଅ ଗୋ ଜନନୀ
କଲ୍ୟାଣୀ କଲ୍ୟାଣମୟୀ ।୦।

ବିପଦ ଆପଦୁ ଘଣ୍ଟ ତୁ ଘୋଡ଼ାଇ
ରଖ ମାତ ମହାମାୟୀ
ଦିଅଗୋ ତୋହର ସେନେହରେ ଭରା
ପଣତର ସୁଖ ଛାଇ
ଏତିକି ଦୟିନି ଘେନ ଗୋ ଭବାନୀ
ଜୟ ତୁ ମଙ୍ଗଳମୟୀ ।୧।

ସଂକଟ ମୋଚନୀ ବିପଦ ଭଞ୍ଜନୀ
ଶିବାନୀ ତୁ ଦଶଭୁଜା
ରିପୁ ସଂହାରିଣୀ ଅମା ବିଧ୍ୱଂସିନୀ
ତ୍ରିଲୋଚନୀ ମା ବିରଜା
ସୃଷ୍ଟି ସ୍ଥିତି ଲୟ ସବୁର କାରଣ
ତୁହି ମା ଅମୃତମୟୀ ॥୨॥





## ୯୫

ଶ୍ରୀଗୁରୁଚରଣ ଚିନ୍ତଆରେ ମନ
ନିତ୍ୟ ନିଶିଦିନ କ୍ଷଣଅନୁକ୍ଷଣ ।୦।

ପରମ ସୁଖଦ ସର୍ବ ତତ୍ତ୍ୱମୟ
ଅମାଅବିନାଶୀ ରୂପ ତେଜୋମୟ
ଦରଶନେ ପାପ ହୁଏ ବିମୋଚନ ।୧।

ମାନବ ରୂପରେ ସେ ତ ଭଗବାନ
ବ୍ରହ୍ମାବିଷ୍ଣୁ ଶିବ ବେଦ ପରାୟଣ
ସକଳତୀର୍ଥର ପୁଣ୍ୟ ଅକଳନ ।୨।

ସଦଗୁରୁ କୃପା ବିନା କେବେ କେହି
ମୁକତିର ପଥ ଖୋଜି ପାଇନାହିଁ
ସେ ପାଦରେ କର ଆତ୍ମନିବେଦନ ।।୩।।





## ୯୬

ଧୂଳି ଧୂସରିତ  ହେଲା ମୋର ତନୁ
ବଡ଼ ଦାଣ୍ଡେ  ଗଡ଼ି ତୋହର
ହେଲୁ କି ପାଷାଣ  ନଦେଲୁ ଆଶିଷ
କାହିଁକିରେ କଳାଠାକୁର ।୦।

ବଡ଼ଦାନୀ ବୋଲି  ଜାଣିଛି ତେବେ ବି
ବଡ଼ କିଛି ମାଗୁନାହିଁ
ଅଳୀକ ସୁଖକୁ  ଅଣ୍ଟିରେ ପୁରାଇ
କି କରିବି ଅବା ମୁହିଁ
ମାଗୁଅଛି ଖାଲି  କରୁଣା କଣିକା
ଏହି ଖାଲି ଅଳି ମୋହର ।୧।

ମୁଁ ଜଣେ ସେବକ  ମାତର ତୋହର
ନାଥ ଅଟୁ ମୋର ତୁହି
କନ୍ଦାଇଲେ ମୋତେ  ମୁହଁ ଖୋଲି ଆଉ
କା' ଆଗେ କହିବି ଯାଇ
ସୁଖେ ପାଳୁଥାଆ  ଦେଉଳରେ ବସି
ତୋର ମାୟାର ଏ ସଂସାର ।।୨।।

■ ■ ■



## ୯୭

ଭାରି ସୁଆଦିଆ ଅବଢ଼ାଭାତ
ଖାଇ ପୋଛିଦେଲି ମୁଣ୍ଡରେ ହାତ ।୦।

ଚକାନୟନକୁ ଭେଟିଲି ଯାଇ
ମନକଥା ଯେତେ ଗଲି ମୁଁ କହି
ହେଲା ସିଏ ମୋର ପରାଣ ମିତ ।୧।

ବାଇଶି ପାହାଚେ ବସିଲି ମୁହିଁ
ଦାଣ୍ଡଧୂଳି ଦେହେ ବୋଳିଲି ନେଇ
ଗାଇଲି ଆନନ୍ଦେ ଜଣାଣ ଗୀତ ।୨।

ଆଖିରୁ ଝରିଲା ଲୋତକଧାର
ବାନ୍ଧିଲା କାଳିଆ ଭାବର ଡୋର
ଢାଳିଦେଲା ହସି କରୁଣା ସେ ତ ।।୩।।





## ୯୮

ଜୟ ଦୁର୍ଗା ଦୁର୍ଗେଶ୍ୱରୀ
ଶତ ସୁଷମାର ଆୟୁଧ ସମ୍ଭାରେ
ଆସ ମା ଗୋ ଅବତରି ।୦।

ଆଦିଶକ୍ତି ମହାଶକ୍ତି
ସର୍ବଭୂତେ ବିରାଜିତ
ମନ୍ତ୍ରଶକ୍ତି ମାତୃଶକ୍ତି
ଜଗଦ୍ଧାତ୍ରୀ ଜଗନ୍ମାତ
ସିଦ୍ଧି ପ୍ରଦାୟିନୀ କଲୁଷ ନାଶିନୀ
ନମୋ ଶିବେ ସୁରେଶ୍ୱରୀ ।୧।

ଶିବଜାୟା ପଦ୍ମାଳୟା
ପାପତାପ ବିନାଶିନୀ
ମହାକାଳୀ ମହାମାୟା
ଭକ୍ତପ୍ରାଣ ଆହ୍ଲାଦିନୀ
ଅନଳ ସମ୍ଭୂତା ହିମଗିରି ସୁତା
ବନ୍ଦେ ରାଜ ରାଜେଶ୍ୱରୀ ॥୨॥

■ ■ ■



## ୯୯

ଜୟ ସଦଗୁରୁ ଜୟ ମଙ୍ଗଳ ମୂରତି
ଜୟ କଳ୍ପତରୁ ଜୟ ଘେନ ମୋ' ପ୍ରଣତି ।୦।

ହେ ଅଭୟ ଦାତା ତୁମେ ବେଦ ମନ୍ତ୍ରସାର
ତୁମେ ସତ୍ୟ ସନାତନ ବିଶ୍ୱଚରାଚର
ଅଗତିର ଗତି ତୁମେ ଭକ୍ତର ଭକତି ।୧।

କାମକ୍ରୋଧ ଲୋଭଠାରୁ ରଖ ମୋତେ ଦୂରେ
ବ୍ରତୀ ହେବି ଜପତପ ଧ୍ୟାନ ଧାରଣାରେ
ଦୀନଜନ ମୁଁ ଅଧମ ଜଣାଏ ମିନତି ।୨।

ଆଶ୍ରୟ ଦିଅ ହେ ଦେବ ତବ ଚରଣରେ
ହୁଅ ଅଧିଷ୍ଠିତ ମୋର ହୃଦ କନ୍ଦରରେ
ଢାଳିଦିଅ କୃପା ବାରି ଲଭିବି ମୁକତି ।।୩।।

■ ■ ■



## ୧୦୦

ଶୂନ୍ୟ ମୋର ଏହି ମନ ମନ୍ଦିରର
ମୁଖଶାଳା ପ୍ରଭୁ ଆଜି
ନଆସିଲେ ତୁମେ ଦୁଃଖ ଅଭିମାନେ
ଆଖି ଲୁହେ ଯିବ ଭିଜି ।୦।

ଭକତ ବାନ୍ଧବ ତୁମେ ଅଟ ବୋଲି
ଧୂପଦୀପ ନିତି ଜାଳି
ଭକତିରେ ନିତି କରୁଥିଲି ପୂଜା
ଭୋକଶୋଷ ଯେତେ ଭୁଲି
ଆନମନା ଦିନେ ପାରିନାହିଁ କରି
ଦୁନିଆର ସୁଖ ରାଜି ।୧।

ଜାଣେ ନାହିଁ କେବେ ଲିଭିଯିବ ମୋର
ଜୀବନର ଦୀପ ଶିଖା
ଲିଭିବା ଆଗରୁ ଭାବଗ୍ରାହୀ ଥରେ
ଦେବ ଆସି ତୁମେ ଦେଖା
ହୃଦୟରେ ନେଇ ଦରଶନ ସୁଖ
ଦୁନିଆରୁ ଯିବି ହଜି ।।୨।।

■ ■ ■



## ୧୦୧

ମନ ମୋର ହେଉ ଯମୁନାର ତଟ
ହୃଦୟ ମୋ' ବୃନ୍ଦାବନ
ନିତ୍ୟ ରଚ ତହିଁ ରାସଲୀଳା ତୁମେ
ହେ ସୁନ୍ଦର ଶ୍ୟାମଘନ ।୦।

ଶ୍ୟାମ ଦେହେ ଥିବ ପାଟପୀତାମ୍ବର
ଗଳା ଦେଶେ ବନମାଳ
ଶିରେ ଶିଖୀପୁଚ୍ଛ କର୍ଣ୍ଣରେ କୁଣ୍ଡଳ
ବକ୍ଷେ କଉସ୍ତୁଭ ହାର
ରକ୍ତିମ ଅଧରେ ବଜାଇବ ବେଣୁ
ଆହା କେତେ ଶୋଭାବନ ।୧।

କୋମଳପୟରେ ନ ଲାଗିବ ଧୂଳି
ହାତ ମୋର ପାତିଦେବି
ଶ୍ରୀଅଙ୍ଗରୁ ଝାଳ ବହିଲା ମାତ୍ରକେ
ବସନରେ ପୋଛିଦେବି
ଦେଖିବି ନୟନେ ଯୁଗଳ ମୂରତି
ଧନ୍ୟ ହେବ ଏ ଜୀବନ ॥୨॥





## ୧୦୨

ତୋ' ଦାଣ୍ଡର ଧୂଳି ଦେହେ ହେଲେ ବୋଳି
ପାପତାପ ଧୋଇ ଯାଏ
ତୋ' ଗରୁଡ଼ଖମ୍ବ କୁଣ୍ଢାଇଧରିଲେ
ହରଷିତ ମନ ହୁଏ ।୦।

ତୋ' ଦଧିନଉତି ଗାଉଥାଏ ତୋ'ର
ମହିମା କୀରତି ଯଶ
ବିଜୟ କେତନ ଫରଫର ଉଡ଼ି
ଡ଼ାକୁଥାଏ ଆସଆସ
ବସିଗଲେ ଦଣ୍ଡେ ବାଇଶି ପାହାଚ
ଆପଣାର କରିନିଏ ।୧।

ତୋ' ଛଡ଼ା ତୁଳସୀ ଭକତ ମନକୁ
ସୁବାସିତ ଦିଏ କରି
ତୋ' ପାଦୁକା ଜଳ ହରିନିଏ ଦୁଃଖ
ଭୋକ ଶୋଷ ହୁଏ ଭୁଲି
ଚାହିଁଦେଲେ ଥରେ କଳାବଦନକୁ
ମାୟା ମୋହ କଟିଯାଏ ।।୨।।





# ୧୦୩

ପୁଣ୍ୟ ନୀଳାଚଳେ ପୁଣ୍ୟମୟ ହରି
ପୁଣ୍ୟରୂପ ଦାରୁରୂପ
ବିରାଜି ଅଛନ୍ତି ରତ୍ନସିଂହାସନେ
ହରିବାକୁ ତ୍ରୟତାପ ।୦।

ତରିଯାଇଥିଲା ଦିନେ କଇବର୍ତ୍ତ
ଯେଉଁ ପାଦ ଧୋଇଦେଇ
ଆସ ଯିବା ମନ ଘେନିବା ଶରଣ
ସେଇ ପାଦ ପଦ୍ମେ ଯାଇ
ଭୁଲି ମାୟାମୋହ ଦିବାନିଶି ବସି
କରୁଥିବା ଜପତପ ।୧।

ସେ ପରମପିତା ଜଗତକରତା
ପୂର୍ଣ୍ଣବ୍ରହ୍ମ ସନାତନ
ପାଳୁଛନ୍ତି ମହୀ ବରାଭୟ ଦେଇ
କରନ୍ତି ସେ ପରିତ୍ରାଣ
କର୍ମ ଅନୁଯାୟୀ ଦିଅନ୍ତି ସେ ଫଳ
ମନଜାଣି ଅନୁରୂପ ।।୨।।





## ୧୦୪

ଶଙ୍ଖ ଚକ୍ରଧାରୀ ଲୀଳାମୟ ହରି
ଦୁଃଖୀଜନ ତାତମାତ
ପାପ ବିନାଶନେ କେତେ ଲୀଳା ତୁମ
ଆହେ ପ୍ରଭୁ ଜଗନ୍ନାଥ ।୦।

ଦ୍ୱାପରଯୁଗରେ କୃଷ୍ଣ ଅବତାରେ
ନନ୍ଦଘରେ ବିରାଜିଲ
ଖେଳ କଉତୁକେ ଦୁଷ୍ଟ ବିନାଶିଲ
ସାଧୁଜନେ ସାହାହେଲ
ପାଣ୍ଡବ ସୁଦାମା ସଖା ହୋଇ ତୁମେ
ପୂର୍ଣ୍ଣ କଲ ମନୋରଥ ।୧।

ତ୍ରେତୟାରେ ହେଲ ରାମ ଅବତାର
ଜନମିଲ ରଘୁକୂଳେ
ସତ୍ୟଧର୍ମ ରକ୍ଷା ପାଇଁ ସହିଥିଲ
କେତେ ଦୁଃଖ ଜୀବନରେ
ତରିଯାଇଥିଲା ଧୋଇଦେଇ ପାଦ
ଦୀନ ହୀନ କଇବର୍ତ୍ତ ।।୨।।





## ୧୦୫

ତୁମ ବଡ଼ପଣ ରାଣ
କହିବକି ଚକାଆଖି
ଭକତର ଦୁଃଖ ଦେଖି
ହୋଇଛକି କେବେ ଦୁଃଖୀ ।୦।

ଦେଖିନାହିଁ ଦିନେ କାହା ଦୁଃଖ ଦେଖି
ଢ଼ାଳିଅଛ ଆଖି ଲୁହ
ଷାଠିଏ ପଉଟି ନଖାଇ ରହିଚ
ଉପବାସେ କେବେ କୁହ
ଆଲଟ ଚାମର ଆଦି
ରହିଛିକି କିଛି ବାକି ।୧।

ଗୀତ ଗୋବିନ୍ଦର ତାଳେ ତାଳେ ନାଚେ
ଦେବଦାସୀ ତୁମପାଇଁ
ଶୋଇଯାଅ ସୁଖେ ରତନ ପଲଙ୍କେ
ନିଧଡକ ତୁମେ ହୋଇ
ଭକତ ଯେ ତେଣେ ବସି
ଥକିଯାଏ ଡାକି ଡାକି ।।୨।।

■ ■ ■



## ୧୦୬

ପ୍ରଭୁ ତୁମ ପାଦେ  ନିତିଦିନ ଦିଏ
ଯେଉଁ ସଜଫୁଟା ଫୁଲ
ସତ କହୁଚି ମୁଁ  ମାଗିବିନି ଦିନେ
ତା'ପାଇଁ ତୁମକୁ ମୂଲ ।୦।

ସବୁଦିନ ଆସି  ବାଇଶି ପାହାଚ
ଧୋଇଦେବି ଆଖିଲୁହେ
ପିନ୍ଧାବସନରେ  ପୋଛିଦେବି ତାହା
ସବୁ ଶୁଖିଯିବା ଯାଏ
ଘିଅ ଦୀପଟିଏ  ଜାଳି ଦେଉଥିବି
କରି କୋଟି ନମସ୍କାର ।୧।

ଭକତ ଆସିଲେ  ଦେଉଳକୁ ତୁମ
ଦରଶନ ଆଶାନେଇ
ତୁମ ଗୁଣ ଯଶ  ଗାଇ ଯିବି ମୁଁ ଯେ
ବଡ଼ଦାଣ୍ଡେ ଠିଆହୋଇ
ମୁଖରିତ ହେବ  ଗଗନେ ପବନେ
ତୁମ ଜୟ ଜୟକାର ॥୨॥





## ୧୦୭

ଶ୍ରୀକ୍ଷେତ୍ରମଣି ସେ ମଉନମୁହାଁକୁ
ଚାହାଁ ବାରେ ଆରେ ମନୁଆ
ତା'ଆଖିରେ ତୋ'ର ଆଖି ମିଶିଗଲେ
ଭୁଲିଯିବୁ ଏଇ ଦୁନିଆ ।୦।

ମାଟି କଣ୍ଢେଇ ତୁ ତୋ' ଡୋରି ତା' ହାତେ
ରଖି ନଚାଉଚି ନିଜ ଇଛା ମତେ
ଭଣ୍ଡିବାକୁ ମିଛେ ମାଦଳ ସାଜିଛି
ସେ ପରାରେ ଭାରି ଛଳିଆ ।୧।

କର୍ମ କରି ଆଶା ନରଖି ଫଳକୁ
ଅଣଅକ୍ଷରରେ ଜପି ତା' ନାମକୁ
ଦାସ ହୋଇ ସେବା କରିତୁ ପାରିଲେ
ତୋ' ହାତରୁ ନବ ନଡ଼ିଆ ।୨।

ଭୁଲିମାୟା ମୋହ ଜୀବନ ବନ୍ଧନ
ଜ୍ଞାନଭକ୍ତି ଯୋଗେ ଘେନ ତୁ ଶରଣ
ତୋ' ନାବର ସିଏ ହୋଇବ ନାଉରି
ପାରିହେବୁ ଭବଦରିଆ ।।୩।।

■ ■ ■



## ୧୦୮

ଯେତେ ଗାଳିଦବୁ ଦଉଥା ବସି
ଯଦି ପାଉଛୁ ତୁ ସେଥିରେ ଖୁସି
ଅଧାଗଢ଼ା ଦିଅଁ କି କରିବି କହ
କହୁଚି କାଳିଆ ମଉନେ ହସି ।୦।

ଦାରୁରୂପ ହୋଇ ମାଦଳ ସାଜିଛି
ନାହିଁ ତା'ର ହାତ ପାଦ
ମହାମେରୁ ସମ ଜଡ଼ ଅଥରବ
ହୋଇଛି ଅଚଳ ସେ ତ
କହୁଚି ସେ ପାଇଁ କାହିଁକି ମିଛରେ
ମଥା ପିଟୁଅଛ ତା' ଆଗେ ଆସି ।୧।

ଯେମିତି କରିବୁ କରମ ସେମିତି
ଫଳନିଜେ ପାଇବୁରେ
ସୁଖ ଅବା ଦୁଃଖ ଭଲମନ୍ଦ ଯାହା
ସବୁ ତୋ'ର ନିଜରରେ
କରୁଥିବ ଖାଲି ହିସାବ ସିଏ ତ
ତୋ' ପାପପୁଣ୍ୟର ଦିବସ ନିଶି ।।୨।।

■ ■ ■



## ୧୦୯

କେତେ ଧନୀ ହେଲି ପାଇ ସତେ ଆଜି
କରୁଣାର ମହାଧନ
ଅଭୟ ପାଦରେ ପାଇଲି ଶରଣ
ଧନ୍ୟ ହେଲା ଏ ଜୀବନ ।୦।

ନଥିଲା ତ ପାଶେ ଖୁଦ କଣିକାଏ
ଅବା କ୍ଷୀର ସରପୁଳି
ନଥିଲାବି ମୋର ହାତରେ ଶ୍ରୀଫଳ
ମିଠାମିଠା ଜାମୁକୋଳି
ଲୁହକୁ ସମ୍ବଳ କରିଯାଇଥିଲି
କରିବାକୁ ଦରଶନ ।୧।

ଅଶ୍ରୁ ଜଳେ ଧୋଇ ବେନି ପଦ୍ମପାଦ
ଭୁଲିଗଲି ଯେତେ ବ୍ୟଥା
କହିବା ଆଗରୁ ଭାବଗ୍ରାହୀ ମୋର
ଜାଣିଗଲେ ମନକଥା
ଭକତ ପଣରେ କରିଲେ ଭାଜନ
ଘେନିଲେ ମୋ' ନିବେଦନ ॥୨॥





## ୧୧୦

କେତେ କନ୍ଦାଇଲୁ ଜଗାରେ
ଜଗତ ନିନ୍ଦିଲେ ତୋ' ବଡ଼ପଣକୁ
ଦୋଷ ଦେବୁନାହିଁ ମୋତେରେ ।୦।

ମୋ' ଦୁଃଖରେ ଯଦି କାନ୍ଦେ ନୀଳଚକ୍ର
ତୋ' ବଡ଼ଦାଣ୍ଡର ଧୂଳି
ଯଦି କାନ୍ଦେ ନେତ ବାଇଶି ପାହାଚ
ତୋ' ସୁଖ ଶରଧାବାଲି
କହିବୁନି କିଛି ଯଦି ରତ୍ନବେଦୀ
ଭାସିଯାଏ ଆଖି ଲୁହରେ ।୧।

ବାଟମଝିଟାରେ ଛାଡିଦେଇ ହାତ
କେତେ ଦହଗଞ୍ଜ କଲୁ
ତଥାପି ତୋହର ମନବୁଝିଲାନି
ପର ମୋତେ କରିଦେଲୁ
ସବୁ ବଡ଼ପଣ କିବା ଖାଲି ତୋ'ର
ଠକିବାକୁ ମିଛ କହିରେ ।।୨।।





# ୧୧୧

ହୃଦୟ ମନ୍ଦିରେ ବସାଇ ଯାହାକୁ
ପୂଜାକରେ ରାତିଦିନ
ସେତ ଅଟେ ମୋର କାଳିଆ ଠାକୁର
ଯଶୋଦାର ଗଣ୍ଠିଧନ ।୦।

ଅତି ଆନନ୍ଦରେ କଣ୍ଠେ ଲମ୍ବାଇଛି
ତାହାରି ନାମର ମାଳା
ଭୁଲିଯାଇଛି ମୁଁ ସଂସାରର ଦୁଃଖ
ଚାହିଁ ତା'ର ଚକାଡ଼ୋଳା
ମୁଁ ତାକୁ ବୁଝିଛି ସେ ମୋତେ ବୁଝିଛି
ଚିହ୍ନିଛି ସେ ମୋର ମନ ।୧।

ଢ଼ାଳିଦେଇଛି ସେ କରୁଣା କଣିକା
ଆଞ୍ଜୁଳାରେ କେତେ ମତେ
ପୋଛିଦେଇଛି ସେ ମୋ' ଆଖିର ଲୁହ
ସେନେହରେ ନିଜ ହାତେ
ଭାବିବାକୁ ମୋତେ ଦେଇନି ଥରଟେ
ଅଟେ ବୋଲି ଦୀନହୀନ ।।୨।।





## ୧୧୨

ମଥାରେ ମୁକୁଟ ମୟୂରର ଚୂଳ
କପାଳେ ଚନ୍ଦନ ଗାର
କି ସୁନ୍ଦର ଦିଶେ ଜଗାକାଳିଆ ସେ
ପିନ୍ଧି ପାଟ ପୀତାମ୍ବର ।୦।

ମଉଡ଼ମଣି ସେ ଶ୍ରୀକ୍ଷେତ୍ରମଣି
ଜଗତଜନଙ୍କ ମନକୁ କିଣି
ପାଳୁଥାଏ ବସି କୋଟି ବ୍ରହ୍ମାଣ୍ଡକୁ
ହୋଇ ବିଶ୍ୱ ଅଧୀଶ୍ୱର ।୧।

ଅଧାଚାନ୍ଦ ଓଠେ ପୀୟୂଷ ହସ
ନାଶେ ମାୟା ମୋହ ବାସନା ବିଷ
ନିଜେ ହସି ପୁଣି ହସାଉଥାଏ ସେ
କେତେ ରଙ୍ଗେ ଏ ସଂସାର ।୨।

ହାତ ନାହିଁ ସେ ତ କେମିତି ସତେ
ବାଣ୍ଟୁଛି କରୁଣା ଆପଣା ହାତେ
ପାଦ ନାହିଁ ହେଲେ ଆସେ ପୁଣି ଚାଲି
ଡାକ ଶୁଣି ଆରତର ।।୩।।





## ୧ ୧ ୩

ତୋ' ଓଠର ଜଗା କଥା ପଦଟିଏ
ଜୀବନେ ପାଥେୟ ମୋର
ମୂକ ହୋଇ ଯେବେ ବସିବୁ ତୁ କିଏ
ପୋଛିବ ମୋ' ଲୁହଧାର ।୦।

ତତଲା ବାଲିରେ କେତେ ଚଲାଇବୁ
ପୋଡ଼ିଯାଏ ମୋର ପାଦ
ଲୋକହସା ହୋଇ ସହୁଛି ମୁଁ ନିତି
କେତେ ନିନ୍ଦା ଅପବାଦ
ବଞ୍ଚିଥାଉଥାଉ ମରଣର ସ୍ୱାଦ
ପାଉଛି ଥରକୁ ଥର ।୧।

ବଣମଲ୍ଲୀ ପରି ଫୁଟି ଝଡ଼ିଯିବି
ଜାଣେନାହିଁ କେତେବେଳେ
ଆଶାଅଛି ମନେ ଲାଗିହେବି ବୋଲି
ଚରଣରେ ଯାଇ ଥରେ
ଏତିକି ମିନତି ପ୍ରାଣର ଆରତି
ଡ଼ାକିନେ ପାଖକୁ ତୋ'ର ।।୨।।





## ୧୧୪

ମୋ' ଜୀବନେ ଯେତେ ଦିବସ ନିଶିରେ
ଲେଖା ପ୍ରଭୁ ତୁମନାମ
ମୋ' ଲୁହର ପ୍ରତି ବିନ୍ଦୁରେ ରହିଚି
ତୁମ ରୂପ ଅନୁପମ ।୦।

ଯଦି ଚାଲୁଚାଲୁ ଜୀବନପଥରେ
ନିରାଶେ ଯାଇଛି ଥକି
ଆଶାର ଅମୀୟ ବାରି ଢ଼ାଳିଦେଇ
ନେଇଛ ପାଖକୁ ଡ଼ାକି
ପରମ ଆନନ୍ଦେ ଚରଣେ ହଜିଛି
ହୋଇଛି ମୁଁ ସତ୍ତାହୀନ ।୧।

ଯୋଗୀ ପରି ନାମ ଜପୁଥିଲେ ବସି
ପରାଣେ ମୋ' ତୁମେ ଥାଅ
ଅନାହତ ନାଦେ ମନ କେନ୍ଦ୍ରେରାରେ
ସୁର ତୁମେ ଭରିଦିଅ
ପ୍ରଣବ ଓଁ କାରେ ତ୍ରିକୁଟ ମଧ୍ୟରେ
ଦିଅ ତୁମେ ଦରଶନ ।।୨।।





## ୧୧୫

ନ ଲଭିବୁ ପରମାଦ
ଥୟକରି ଚିତ୍ତ ଦିବାନିଶି ଚିତ୍ତେ
ଚିନ୍ତୁଥିଲେ ପଦ୍ମପାଦ ।୦।

ପରମଦୟାଳୁ ସେ ପରମପିତା
କଳୁଷନାଶକ ମୁକତିର ଦାତା
ସଂକଟମୋଚନ କରିଣ କ୍ଷମିବେ
ସର୍ବ ଦୋଷ ଅପରାଧ ।୧।

ତାହାଙ୍କ ପ୍ରେମରେ ମନକୁ ହଜାଇ
କର ତାଙ୍କ ପୂଜା ହୃଦୟେ ବସାଇ
ଆନନ୍ଦ ମନରେ ପାନକର ନିତ୍ୟ
ନାମରସ ମକରନ୍ଦ ।୨।

ଭବ ବନ୍ଧନରୁ କରିବେ ତାରଣ
ଅଭୟପଦରେ ସେ ଦେବେ ଶରଣ
ବେନିଭୁଜ ଟେକି ଦିବ୍ୟ ଚେତନାର
ଦେବେ ଶୁଭ ଆଶୀର୍ବାଦ ।।୩।।

■ ■ ■



## ୧୧୬

ଶ୍ରୀଗୁରୁଚରଣ  ସେବାଠାରୁ ବଡ଼
କିଛିନାହିଁ ଆଉ ଜଗତରେ
ସର୍ବ ସୁଖ ମିଳେ  ନିତ୍ୟ ସେବୁଥିଲେ
ସେଇ ପଦ୍ମପାଦ ବିଶ୍ୱାସରେ ।୦।

କୋଟି ସମପ୍ରଭ  ଶ୍ରୀମୁଖର ଶୋଭା
ବଚନ ଅମୃତ ତୁଲ
ପରମ ସେ ତତ୍ତ୍ୱ  କରେ ଶୁଦ୍ଧି ଚିତ୍ତ
ଭବଭୟ ହୁଏ ଦୂର
ସେ ମଙ୍ଗଳମୟ  ଆନନ୍ଦ ନିଳୟ
ଦ୍ୱନ୍ଦ ବିରହିତ ସଗୁଣରେ ।୧।

ଅନାଦି ମହିମା  ନାହିଁ ଯା' ତୁଳନା
ସିଏ ବେଦମନ୍ତ୍ର ସାର
ସିଏ ହୃଦୟର  ସତ୍ୟର ଆଧାର
ଶୁଦ୍ଧ ବୁଦ୍ଧି ସଦାଚାର
ଆତ୍ମା ଲଭେ ଜ୍ଞାନ  ପରମ ନିଦାନ
ଏକନିଷ୍ଠ ଭକ୍ତି ଉପଚାରେ ।୨।
ଶ୍ରୀଗୁରୁ ସ୍ମରଣ  ଆତ୍ମନିବେଦନ
ଦୀକ୍ଷା ମନ୍ତ୍ର ଗ୍ରହଣରେ
ମନ ଅନୁଗତ  ହୁଅଇ ନିରତ
ପାଦୋଦକ ସେବନରେ
ଧନ୍ୟ ହୁଏ ନର  ଜୀବନ ଜନମ
ଧୂଳି ମାଟିର ଏ ଧରଣୀରେ ।।୩।।



# ୧୧୭

ହେ ପରମେଶ୍ୱର ତୁମେ ଅଧୀଶ୍ୱର
ମୋର ମନ ମନ୍ଦିରର
ତୁମେ ମୋ' ଓଠର ମୃଦୁ ମନ୍ଦ ହସ
ତୁମେ ଲୁହ ମୋ' ଆଖିର ।୦।

ମୁକୁଳାଇ ମୋତେ ମାୟା ବନ୍ଧନରୁ
ବାନ୍ଧିଛ ବନ୍ଧନେ ତୁମ
ମହକାଇ ଅଛ ଭକତି ସୁମନେ
ମୋହରି ହୃଦୟ ବନ
ତୁମେ ମୋ ପରାଣ ତୁମେ ମୋ' ଜୀବନ
ଅଳୀକଏ ଶରୀରର ।୧।

ଅନୁନୟ ମୋର ଅନୁଦାନ ପ୍ରଭୁ
ତୁମରି ଚରଣ ତଳେ
ପାଉଥିବି ମୁଖ ଦରଶନ ସୁଖ
ନିତି ମୁଁ ଭକତ ମେଳେ
ତୁମେ ମୋର ସୁର ତାଳ, ଲୟ, ଛନ୍ଦ
ସାଧନା ମୋ' ସଂଗୀତର ।।୨।।

■ ■ ■



## ୧୧୮

ପଙ୍କିଳ ମଧ୍ୟଏ ମନର ସରସୀ
ପାରୁନାହିଁ କିଛି କହି
ତଥାପି ଠାକୁରେ ଶୁଣିବ ମୋ' ଅଳି
ଭାବଗ୍ରାହୀ ତୁମେ ହୋଇ ।୦।

ଅମୃତ ଭାବି ମୁଁ ପିଇଛି ଗରଳ
ଅଜ୍ଞାନୀର ମୂଢ଼ପଣେ
ନବୁଝି ନଶୁଝି କେତେ ଯେ କରିଛି
ଅପରାଧ ଏ ଜୀବନେ
ଛଟପଟ ହୁଏ କରମ କଷଣେ
ମନଝୁରେ ତୁମପାଇଁ ।୧।

ତୁଟାଇ ସକଳ ମାୟାର ବନ୍ଧନ
ଆସିଅଛି ତୁମ ପାଶେ
ଚରଣେ ତୁମର ମାଗୁଛି ଶରଣ
ଅନୁତାପ ଅବଶେଷେ
କ୍ଷମାକର ଯେତେ ଦୋଷ ଅପରାଧ
ଦିଅ ତୁମ ପାଦ ଛାଇ ॥୨॥

■ ■ ■



## ୧୧୯

ଅଧା ଗଢ଼ା ଦିଅଁ ବୋଲି ବୋଲାଉଛି ସିଏରେ
ଅଧା ନୁହେଁ ପୂର୍ଣ୍ଣବ୍ରହ୍ମ ପୂର୍ଣ୍ଣ ଷୋଳକଳାରେ ।୦।

ନ ଜାଣିଲାପରି କରେ କେତେ ଶଠ ପୀରତି
ସେ ପାଇଁ ତା' ନାମେ କେତେ ଅପନିନ୍ଦା କୀରତି
ସବୁଜାଣି ଉଭାଥାଏ ହୃଦୟର ବେଦୀରେ ।୧।

ନାମ ସୂତ୍ରେ ଗଣ୍ଠି କରି ବାନ୍ଧିଦେଲେ ତାହାକୁ
ନାମ ବ୍ରହ୍ମ ହୋଇ ସେ ତ ଭକତର ମନକୁ
କରେ ପୁଣ୍ୟ ତପୋବନ ଅନାହତ ନାଦରେ ।୨।

ସୃଷ୍ଟି ସ୍ଥିତି ବିଲୟର କାରଣ ସେ ସବୁର
ତା' ରଙ୍ଗରେ ରଙ୍ଗାଇଛି ତା'ର ଏଇ ସଂସାର
ପାପ ନାଶିବାକୁ ନିଏ ଜନମ ସେ ଧରାରେ ।।୩।।

■■■



## ୧୨୦

ଦିନ ହଜିଯିବ   କଥା ରହିଯିବ
ଜାଣିଚ କଳାଶ୍ରୀ ମୁଖ
ସବୁ ଜାଣି ଯେବେ   କହିବନି କଥା
ହେବନି କି ମନେ ଦୁଃଖ ।୦।

ଯେତେ ବେଳେ ଯାହା   ଦେଇଚି ତୁମକୁ
ନେଇଚ ବଢ଼ାଇ ହାତ
ଦୀନଜନ ଭାବି   ଦିନଟିଏ ପାଇଁ
ଏଡ଼ାଇ ଦେଇନ ସତ
ତଥାପି କାହିଁକି   ମନ ବୁଝେନାହିଁ
ପରାଣେ ଲାଗେନି ସୁଖ ।୧।

ମନଉଣା ହୁଏ   କୁହନାହିଁ ତୁମେ
ମୁହଁ ଖୋଲି ପଦେ କଥା
ଦୋଷ କିଛି ଆଉ   କରିଛି କି ଭାବି
ମନେ ମୋର ଲାଗେ ବ୍ୟଥା
କରୁଣା ବରଷି   କୁହ ପଦେ କଥା
ବସାଇ ଚରଣ ପାଖ ।।୨।।





# ୧୨୧

କଥାକୁହ ନାହିଁ   ମୂକ ଦେବତା ହେ
ତଥାପି କି କଥା କୁହ
ଶୁଣି ସେ ବଚନ   ଭକତ ଆନନ୍ଦେ
ଝରାଏ ନୟନୁ ଲୁହ ।୦।

ହାତ ନାହିଁ ତୁମ   ହାତ ଟେକି ଦିଅ
ଯିଏ ବି ମାଗଇ ଯାହା
ବିପଦେ ଆପଦେ   ବାହୁ ଛାୟା ଦେଇ
ହୋଇଥାଅ ତୁମେ ସାହା
ଧରି ଶଙ୍ଖଚକ୍ର   ଗଦାପଦ୍ମ ଚିହ୍ନ
ଦୁରିତ ନାଶନ କର ।୧।

ପାଦ ନାହିଁ ହେଲେ   ଆରତର ଡାକେ
ଆସ ତା' ପାଖକୁ ଚାଲି
ପାଷାଣ ଅଧରୁ   ଢ଼ାଳି ଦିଅ ହସ
ଢ଼ାଳି ଦିଅ କୃପା ବାରି
ଅପଲକେ ଚାହିଁ   ବାନ୍ଧିଦିଅ ତୁମେ
ତୁମରି ମମତା ଡ଼ୋର ॥୨॥





## ୧୨୨

ନେତ କହେ କଥା ଯେଉଁଠି ଜଗାର
ସେ କେମିତି ହେବ ମୂକ
ମୂକବଧିର ତ ବାଉଳା ମନ ତୁ
ଶୁଣୁନାହୁଁ ତା'ର ଡାକ ।୦।

ଦେଉଳେ ବସିଛି ବାଟ ତୋ'ର ଚାହିଁ
ମେଲାଇ ତା' ଚଉବାହା
ଡାକୁଛି ଦେବାକୁ ଚଉବର୍ଗ ଦାନ
ଦେଖାଇ ସତ୍ୟର ରାହା
ଡାକ ଶୁଣିବାରେ ପାଶେ ଯାଇ ତା'ର
ଚକାନୟନକୁ ଦେଖ ।୧।

କିଣିନେବ ମନ ମିଠାକଥା କହି
ଅସୀମ ତାହାର ମାୟା
କରୁଣା ବରଷି ଧୋଇଦେବ ପାପ
ପବିତ୍ର ହେବ ତୋ' କାୟା
ହୃଦୟ ମନ୍ଦିରେ ଦେଖିବୁ ତାହାକୁ
ତ୍ରିକୂଟରେ ଲୟ ରଖ ।।୨।।

■■■



## ୧୨୩

ମରମ ଭେଦିଲା ପରାଣ ମୋହିଲା
କାହ୍ନୁର ମୁରଲୀ ସ୍ୱନ
ଆନନ୍ଦ ଅଧୀରେ ବହିଗଲା ଅଶ୍ରୁ
କରି ତା'ର ଦରଶନ ।୦।

ପିନ୍ଧିଥିଲା ପାଦେ ସୁବର୍ଣ୍ଣ ନୂପୁର
ଦେହେ ପାଟ ପୀତାମ୍ବର
ହସ୍ତରେ କଙ୍କଣ କର୍ଣ୍ଣରେ କୁଣ୍ଡଳ
ବକ୍ଷେ ମଣିମୁକ୍ତା ହାର
ଶିରେ ଶିଖୀପୁଚ୍ଛ କପାଳେ ଚନ୍ଦନ
ଆହା କେତେ ଶୋଭାବନ ।୧।

ରାଧା ଚିତ୍ତଚୋର ସେ ବଂଶୀ ବଦନ
ଅପରୂପ ଦିଶୁଥିଲା
ମୁରୁକି ମୁରୁକି ହସରୁ ଅବାକି
ମକରନ୍ଦ ଝରୁଥିଲା
ନୟନେ ନୟନ ମିଶାଇ ମଉନେ
କିଣିନେଲା ମନପ୍ରାଣ ॥୨॥





## ୧୨୪

ଜଗାରେ ମୋ' ଜଗାରେ
ଦୀପ ଜଳୁଥାଏ ତୋ'ର ପୂଜାଲାଗି
ମୁଁ ତ ଝୁରୁଥାଏ ତୋ'ର ବାଟ ଜଗି
ଆସିଯାଆ ଥରେ ପାଦ ଧରି ତୋ'ର
ତୋତେ ହୋଇବି ଓଳଗି
ଜଗାରେ.... ରାଣ ମୋ ରହିଲା ତୋତେରେ ।୦।

ଅଣୁଠାରୁ କୀଟ ଯାଏଁ
ସଭିଏଁ ଅଟନ୍ତି ତୋ'ର
ଅଟନ୍ତିବି ତୋ' ନିଜର
ଦେବତା ଅସୁର ନର
ହେଲେ ତୋ' ବିନାରେ ମୋର ବୋଲି ଆଉ
କେହି ନାହି ତ ମୋ' ଲାଗି ।୧।

ଜାଣେ ତୁହି ଦୟାମୟ
ଦିନେ ତ ଆସିବୁ ପାଶେ
ମନ ମୋର ମହକିବ
ତୁଳସୀ ଦୟଣା ବାସେ
ଚନ୍ଦନଚର୍ଚ୍ଚିତ ରୂପ ନିରେଖି ମୁଁ
ଧନ୍ୟ ହୋଇବି ତୋ' ଲାଗି ।।୨।।

■■■



## ୧୨୫

 କ୍ଷମା କରୁଣାର ଆନନ୍ଦ ମୂରତି
ଜଣାଏ ତୁମରି ଚରଣେ ପ୍ରଣତି
ହେ ମା ଭଗବତୀ ।୦।

ଜନନୀ ଗୋ ତୁମେ ରାଜରାଜେଶ୍ୱରୀ
ସର୍ବଭୂତେଶ୍ୱରୀ ଜଗତଈଶ୍ୱରୀ
ଘେନ ମା' ଗୋ ମୋର ମଙ୍ଗଳ ଆରତି
ହେ ମା ଭଗବତୀ ।୧।

ମଧୁମୟ ତବ ନାମ ସୁମରଣେ
ଲଭିଅଛି ସୁଖ ଶାନ୍ତି ଏ ଜୀବନେ
ତୁମେ ମା' ଗୋ ମୋର ଶକତି ଭକତି ।୨।

ମାଗୁନାହିଁ ଧନ ମାନ ଅବାଞ୍ଛିତ
ମାଗୁଅଛି କର ତୁମ ପଦାଶ୍ରିତ
ଦିଅ ଶୁଭାଶିଷ ଏତିକି ମିନତି
ହେ ମା ଭଗବତୀ ।।୩।।

■ ■ ■



## ୧୨୬

ଦେଖ ଦେଖ ଗୋ ମିତ.... ଦେଖ ଦେଖ ସଙ୍ଗାତ

ଗମ୍ଭୀରା ଭିତରେ ବସିଛି କାଳିଆ
ହୋଇଛି ସୁନ୍ଦର ବେଶ
ଚକାଆଖି ମେଲି ଚାହିଁଛି ଏମିତି
ଡାକୁଛି ତାହାରି ପାଶ ।୦।

ମସ୍ତକରେ ତା'ର ମୟୂର ଚନ୍ଦ୍ରିକା
କପାଳେ ଚନ୍ଦନ ଚିତା
ଗଳେ ବନମାଳ ବକ୍ଷେ କଉସ୍ତୁଭ
ନାକରେ ଗଜ ମୁକୁତା
ତୁଳସୀ ଦୟଣା କସ୍ତୁରୀ ବାସରେ
ବାସୁଛି ସେ ପୀତବାସ ।୧।

ବିଜୟ କେତନ ଉଡ଼ାଇ ଦେଇଛି
ରତନବେଦୀରେ ବସି
ପାଳୁଛି ସୁଖରେ ସାରା ଜଗତକୁ
କି ସୁନ୍ଦର ହସ ହସି
ଶଙ୍ଖଚକ୍ର ଗଦାପଦ୍ମ ଧରି ହାତେ
କରୁଛି ପାତକ ନାଶ ॥୨॥





## ୧୨୭

ଭାବୁଛ କି ପ୍ରଭୁ ତୁମେ
ଡାକ ଶୁଣିବନି
ଡାକିଡାକି ଥକିଗଲେ
ଆଉ ଡାକିବିନି ।୦।

ଜାଣେ ମୋର ଡାକ ସବୁ
ଶୂନ୍ୟରେ ହଜିଛି
ଝରିଝରି ଆଖି ଲୁହ
ସାଗର ହୋଇଛି
ତଥାପି ବି ଦିନେ କେବେ
ଦୋଷ ମୁଁ ଦେବିନି ।୧।

ମାୟାପଥେ ଚଲାଉଚ
ଦେଖୁଚ ଖୁସିରେ
ପାରିବିନି ଫେରି ଆଉ
ପଥ ମୁଁ ହୁଡ଼ିଲେ
ଆଶ୍ରା ମୋର ତୁମ ପାଦ
ପଥ ହୁଡ଼ିବିନି ॥୨॥

■ ■ ■



## ୧୨୮

ଯୋଗୀ ମୁଁ ହେଲି ଜଗାରେ
ସଂସାର ମାୟାରୁ ମୁକୁଳାଇ ମୋତେ
ବାନ୍ଧିଲୁ ତୋ'ର ମାୟାରେ ।୦।

ଯତନେ ତୋ' ନାମ ଲେଖି ବସନରେ
ପିନ୍ଧିଲି ମୁଁ ଖୁସି ମନେ
ଅଧୀର ବିଧୁର ହେଲା ମୋ' ପରାଣ
ନଦେଖିଲେ ତୋତେ ଦିନେ
ତୋ' ପ୍ରେମରେ ପୁଣି ଏତେ ସୁଖଥାଏ
ଜାଣିଲି କେତେ ଡ଼େରିରେ ।୧।

ଗିରିବନ ପ୍ରାନ୍ତେ ନଗରେ ନଗରେ
ଏକତାରା ନେଇ ହାତେ
ତୋ' ଗୁଣ ଗାରିମା ମହିମା ସୁଖ୍ୟାତି
ଗାଇ ଗଲି ସବୁ ଯେତେ
ମୁଖରିତ ହେଲା ଚଉଦିଗେ ତୁତ
ମରମୀ ଦିଅଁ ବୋଲିରେ ।।୨।।





## ୧୨୯

କରୁଣାମୟୀ ଗୋ  ତୁମ କରୁଣାରୁ
କରନାହିଁ ମୋତେ ବଞ୍ଚିତ
କରୁଣା ନୟନେ  ଏହି ଦୀନଜନେ
ଚାହିଁ ଦିଅ ବାରେ କିଞ୍ଚିତ ।୦।

ସେନେହରେ ଉଣା  ନକରଗୋ ମାତ
ତୁମ ପଦେ ଏହି ଅଳି
ଶୁଭ ଆଶିଷର  ସୁଧାମୟ ବାରି
ଦିଅ ମୋର ଶିରେ ଢ଼ାଳି
ଜୀବନରେ ଜୀଇଁ ରହିଥିବା ଯାଏଁ
ଆଉ କିଛି ଲୋଡ଼ା ନାହିଁ ତ ।୧।

ହୃଦୟ ସାଗରେ  ଭକତି ଜୁଆର
ମଥାପିଟୁ ଅହରହ
ପାଦ ସେବି ତୁମ  ପାଉଥିବି ସୁଖ
ଭୁଲି ଲୋଭ ମାୟା ମୋହ
ପୁଲକିତ ପ୍ରାଣେ  ଗାଉଥିବି ସଦା
ମଧୁମୟ ତବ ସଂଗୀତ ॥୨॥





## ୧୩୦

କଳାଠାକୁର ମୋ' କଳାଠାକୁର
କଳା ମେଘ ତୁତ କଳା ବାଦଲ
କରୁଣା ବରଷି ଭିଜାଇ ଦେଏ ତୁ
ଭକତର ମନତଳ ।୦।

ଶଙ୍ଖ ହୁଳହୁଳି ମୃଦଙ୍ଗ ବାଜିବ
ବଡ଼ଦାଣ୍ଡ କେତେ ମୁଖରିତ ହେବ
ବାଇଶି ପାହାଚ ଟପି ବହିଯିବ
କରୁଣାର ବାରିଧାର ।୧।

ଲଭି ସେଇ ତୋର' କରୁଣାର ବାରି
କେତେ ଦୁଃଖୀରଙ୍କି ପାପୀ ଯିବେ ତରି
ପତିତତାରଣ ନାମେ ହବ ତୋ'ର
କେତେ ଜୟ ଜୟକାର ।।୨।।





# ୧୩୧

ନିତ୍ୟ ସେ ସତ୍ୟ ସେ  ମଙ୍ଗଳ ମୂରତି
ପ୍ରଭୁ ଶଙ୍ଖ ଚକ୍ରଧାରୀ
ଶାଶ୍ୱତ ଭାସ୍ୱତ  ଚିର ସୁନ୍ଦର ସେ
ଗିରି ଗୋବର୍ଦ୍ଧନଧାରୀ ।୦।

ମଧୁରେ ମଧୁର  ସେ ରୂପ ମଧୁର
ରାଧିକାର ଚିତ୍ତଚୋର
ସେ ରୂପ ନିରତେ  ହୃଦୟେ ପୂଜିଲେ
ଭବ ଭୟ ହୁଏ ଦୂର
ଶକ୍ତି ସେ ଗତି ସେ  ଆତ୍ମା ସେ ଜୀବର
ଶୂନ୍ୟଦେହୀ ଶୂନ୍ୟଚାରୀ ।୧।

ଆନନ୍ଦେ ଆନନ୍ଦ  ରସ ମକରନ୍ଦ
ସୁଖମୟ ନାମରସ
ସେ ରସ ପାନରେ  ପରାଣ ପବିତ୍ର
ଧୋଇଯାଏ ମାୟାବିଷ
ଛନ୍ଦିତ ବନ୍ଦିତ  ଚରଣ ଯୁଗଳ
ଅଟେ ମୁକତିର ତରୀ ।।୨।।





## ୧୩୨

ଲବଙ୍ଗଲତା ମୋ' କନକଲତା
କାଳିଆ କାହିଁକି କହୁନି କଥା
ସହି ହେଉନାହିଁ ଅଧା ଚାନ୍ଦ ଓଠେ
ଏତେ ତା'ର ନୀରବତା ।୦।

କଜ୍ୱଳଠାରୁ ବି ଆହୁରି କଳା ତା'
କମଳ ମୁଖର ଶୋଭା
ଟୋପି ଟୋପି ବାସ ଚନ୍ଦନ ଚିତାରେ
ଦିଶେ କେଡ଼େ ମନଲୋଭା
ମୋହିନୀମନ୍ତରେ ଡାକିନି କାହିଁକି
ବୁଝିବାକୁ ମନବ୍ୟଥା ।୧।

ମନେ ତା'ର ବୋଧେ ପଡୁଛି ଗୋପର
ପିଲାଦିନ ହସ ଖୁସି
ରାଧା ସଙ୍ଗେ କେତେ ମାନ ଅଭିମାନ
ଯମୁନାର ଜଳରାଶି
ଝୁରି ଝୁରି କିବା ବସିଛି ମଉନେ
ଲୁଚାଉଚି ଆକୁଳତା ।।୨।।





## ୧୩୩

ହେ ପରମ ପ୍ରେମମୟ ଆତ୍ମାର ଠାକୁର
ଦୟାବହି ଦିଅ ତୁମେ ବଢ଼ାଇ ପୟର
କୋଳରେ ମୁଁ ନେଇ ଧୀରେ ଧୋଇଦେବି ଆଖି ନୀରେ
ପାଇବି ମୁଁ ସୁଖ ମନେ ଅମୃତ ପଦର ।୦।

ଜନମ ଦେଇଛ ତୁମେ କରମ ଦେଇଛ ତୁମେ
ଦେଇଛ ବି ସୁଖ ଦୁଃଖ ଭଲ ମନ୍ଦ ଏ ଜୀବନେ
କରିନାହିଁ ତୁମ ଆଗେ ଅଭିମାନ ଅଭିଯୋଗ
ବସିନାହିଁ ମନମାରି ଉଦାସରେ କେବେ ଦିନେ
ଆପଣାର କରିଅଛି ହସ ଲୁହ ସବୁକିଛି
ଭାବି ତାହା ଦାନ ଅଟେ ମୋ' ପାଇଁ ତୁମର ।୧।

ଅଳୀକ ମାୟାରେ ଭୁଲି କରୁନି ଶ୍ରୀପଦେ ଅଳି
ଧନ ମାନ ସନମାନ ଅମରତ୍ୱ ଦିଅ ବୋଲି
ମାଗୁଛି ମୁଁ ଖାଲି ତୁମ ଶୁଭଆଶିଷର ବାରି
କରି ଅନୁଗ୍ରହ ମୋର ଶିରେ ଦିଅ ତୁମେ ଢାଳି
ସାରା ରାତି ଉଜାଗରେ ଦୀପ ଜାଳି ସରାଗରେ
ଝୁରୁଥାଏ ତୁମପାଇଁ ହୋଇ ମୁଁ ଅଧୀର ।।୨।।





## ୧୩୪

ଭକତିର ନଈ ଶୁଖି ତ ଯାଇଛି
ପାରୁନାହିଁ ଆଉ ଝରି
କରୁଣାମୟହେ ବରଷାଇ ଦିଅ
ତୁମ କରୁଣାର ବାରି ।୦।

ଯେଉଁଠି ଚାହିଁଲେ ମାୟା ମରୀଚିକା
କପଟପାଶାର ଖେଳ
ନିତି ମରି ପୁଣି ବଞ୍ଚିବାକୁ ହୁଏ
ନୟନୁ ନିଗାଡ଼ି ନୀର
କାହିଁକି ରଖିଲ ପ୍ରଭୁ ତୁମେ ଏତେ
ପାପପୁଣ୍ୟ ଭଳି ଭଳି ।୧।

କେମିତି ଗାଇବି କୁଳୁକୁଳୁ ନାଦେ
ମନର ଶରଧା ଗୀତି
କେମିତି କରିବି ତବ ଆରାଧନା
ତୁମରି ମଙ୍ଗଳ ସ୍ତୁତି
କି ଦେଇ ପୂଜିବି ଶ୍ରୀଚରଣ ତୁମ
ନିଜେ ମୁଁ ତ ମରୁବାଲି ।।୨।।





## ୧୩୫

ଗାଳି ଦେଇଥିଲି ବୋଲିରେ କାଳିଆ
ମନେ ମୋର ଥିଲା ଡର
ଭାବିଥିଲି ଆଉ ଗଲେ ତୋ' ପାଖକୁ
ଚାହିଁବୁନି ମୁହଁ ମୋର ।୦।

ହସିଲୁ ତୁ ଚାହିଁ ଦୂରୁ ଦେଖି ମୋତେ
ଆଖିରେ ମିଶାଇ ଆଖି
କି ମନ୍ତର କଲୁ ତୋ' ଆଖିରେ ମୋର
ଆଖି ରହିଗଲା ଲାଖି
ବୁଝିଲୁ ମୋ' ଦୁଃଖ ମାନ ଅଭିମାନ
ଥିଲା ଯେତେ ହୃଦୟର ।୧।

ଚିରଦିନ ପାଇଁ ଋଣୀ କଲୁ ମୋତେ·
କରି ମୋତେ ଆପଣାର
ତୁ ତ ବଡ଼ଲୋକ ବଡ଼ ପଣ ନେଇ
ଧରିବୁନି ଦୋଷ ମୋର
କରିବୁନି ଛଳ କପଟ ମୋ' ସାଥେ
ତୋ' ପାଦରେ ମୋ' ଜୁହାର ।।୨।।





## ୧୩୬

ଅକିଞ୍ଚନ କହି  ଯଦି ତୁ ମାଆଲୋ
ନଚାହିଁବୁ ମୁହଁ ମୋର
ବାହୁନି ବାହୁନି  କାନ୍ଦିବି ତୋ' ଆଗେ
ଧରି ପଦ୍ମପାଦ ତୋ'ର ।୦।

ତୁହି ପରା ଅଟୁ  ସର୍ବଶକ୍ତିମୟୀ
ଦୁଃଖଶୋକ ହରି ନେଉ
ପଣତରେ ତାଙ୍କି  ପୋଛିଦେଉ ଲୁହ
ପାପତାପ ଧୋଇ ଦେଉ
ଅଧରରୁ ହସ  ଢାଳିଦେଇ କରୁ
ଜୀବାତ୍ମାର ସୁବିଚାର ।୧।

ଧର୍ମ, ଅର୍ଥ, କାମ  ମୋକ୍ଷ ପ୍ରଦାୟିନୀ
କଲ୍ୟାଣୀ ତୁ ସର୍ବଂସହା
ତିନିଭୁବନରେ  ନାମ ତୋ'ର ଶୁଭେ
କିଏ ବା ନଜାଣେ ଏହା
ଏତେ ଦୟାମୟୀ  ହୋଇଣ ମୋ'ଠାରେ
କରିବୁନି ଅବିଚାର ।।୨।।





ସୁଭଦ୍ରା କମିଲା

ସୁଭଦ୍ରା କମିଲା ଓଡ଼ିଆ ଗୀତି କବିତାରେ ଏକ ପରିଚିତ ନାମ । ତାଂକର ସୁଲଳିତ ଶବ୍ଦ ସଂଯୋଜନା, ଛଂଦ, ଯତିପାତ ଗୀତିକବିତା ରଚନା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଦାବୀ କରେ । ଭଜନ ମାଧ୍ୟମରେ ଭକ୍ତର ବିନୀତ ପ୍ରାର୍ଥନା 'ଦୁବ ଅକ୍ଷତ'ର ବିଶେଷତ୍ୱ । ଜୀବନଧର୍ମୀୟ ଏଇ ଗୀତିକବିତା ଗୁଡ଼ିକରେ ଭକ୍ତିଭାବ ଓ ସୁଚିନ୍ତ୍ୟ ଚେତନାରେ ପ୍ରତ୍ୟେକ ପାଠକପ୍ରାଣ ଉଦ୍‌ବୁଦ୍ଧ ଓ ଉତ୍‌ଫୁଲ୍ଲିତ ହେବାର ଆଶା କରାଯାଏ ।

କବି ସୁଭଦ୍ରାଂକ ଏଇଗୀତି କବିତା ସମଗ୍ର ରାଜ୍ୟର ଆକାଶବାଣୀ କେଂଦ୍ରମାନଙ୍କରେ ବହୁଳ ପ୍ରଚାରିତ ଓ ପ୍ରସାରିତ ହୋଇ ଆସୁଅଛି । ଏଇ ଭାବମୟ 'ଦୁବ ଅକ୍ଷତ' ଜନମାନସରେ ରେଖାପାତ କରିବ, ଏହା ନିଃସଂଦେହରେ କୁହାଯାଇପାରେ ।

S ସମନ୍ୱୟ